ପ୍ରକାଶକ :

ପ୍ରଭାକର ମିଶ୍ର

ନବରଙ୍ଗ

ଷ୍ଟେସନରୋଡ଼,

ଉଗରପଡ଼ା, କଟକ-୭୫୩୦୦୨

ପ୍ରଥମ ପ୍ରକାଶ : ୧୯୮୯

ଚିତ୍ର :

ଶ୍ରୀ ଅମୂଲ୍ୟ କୁମାର ନାୟକ

ପ୍ରାଣୀତତ୍ତ୍ୱ ବିଭାଗ, ବି.ଜେ.ବି. କଲେଜ, ଭୁବନେଶ୍ୱର

ମୁଦ୍ରଣ :

ନବରଙ୍ଗ

ଷ୍ଟେସନରୋଡ଼,

ଉଗରପଡ଼ା, କଟକ-୨

ମୂଲ୍ୟ : ବାରଟଙ୍କା ମାତ୍ର

# ରୋଗ ନେଇ ଦୁଇପଦ

ଏ ସୃଷ୍ଟିରେ ବହୁତ ରକମର ଜୀବ ଅଛନ୍ତି । ସେଥିରୁ ଅନେକ ମଣିଷର ଉପକାର କରିବାବେଳେ କେତେକ ମଣିଷ ଶରୀରରେ ପଶି ନାନା ରୋଗ ସୃଷ୍ଟି କରନ୍ତି । ଫଳରେ ମଣିଷ ଅସୁସ୍ଥ ହୋଇ ରୋଗିଣା ହୁଏ ଓ ନିଜର ସୁଖସ୍ୱାଚ୍ଛନ୍ଦ୍ୟ ହରାଏ । ସାଧାରଣ ଲୋକ ବିଭିନ୍ନ ରୋଗର ପ୍ରକୃତ କାରଣ ଜାଣି ନଥିବାରୁ ଏପରି ଅବସ୍ଥାସୃଷ୍ଟି ହୁଏ ।

କୌଣସି ନୂଆକଥା ଜାଣିବା ପାଇଁ ଓ ତଦନୁଯାୟୀ ନିଜର ଦୈନନ୍ଦିନ ଜୀବନରେ ଅଭ୍ୟାସ କରିବା ପାଇଁ ପିଲାଦିନ ହିଁ ସର୍ବୋତ୍କୃଷ୍ଟ ସମୟ । ତେଣୁ ବିଭିନ୍ନ ରୋଗ କରୁଥିବା ଜୀବମାନଙ୍କ ସମ୍ବନ୍ଧରେ ପ୍ରାଥମିକ ସ୍କୁଲରେ ପଢ଼ୁଥିବା ଛାତ୍ରଛାତ୍ରୀମାନଙ୍କୁ ଜ୍ଞାନ ଦେବାଲାଗି ଏହି ବହିରେ ଛୋଟିଆ ଛୋଟିଆ ଗପ ମାଧ୍ୟମରେ ଚେଷ୍ଟା କରାଯାଇଛି ।

ସାଧାରଣରେ ହେଉଥିବା ରୋଗମାନଙ୍କ ମଧ୍ୟରୁ କେତେକ ବଂଶଗତ ହୋଇଥିଲାବେଳେ, କେତେକ ଆମର ଅଭ୍ୟାସ ଯୋଗୁଁ ହୋଇଥାଏ । ପୁଣି ଅଧିକାଂଶ ରୋଗ

କୌଣସି ନା କୌଣସି ଜୀବ ପାଇଁ ହୋଇଥାଏ । ରୋଗ କରୁଥିବା ଜୀବମାନଙ୍କୁ ଭାଇରସ୍ ବା ଭୂତାଣୁ, ବାକ୍‌ଟେରିଆ ବା ଜୀବାଣୁ ଓ ଅଣୁଜୀବ ପର୍ଯ୍ୟାୟଭୁକ୍ତ କରାଯାଇଥାଏ ।

"ଜୀବଟିଏ ଲାଗି ରୋଗଟିଏ" ପରି ଛୋଟିଆ ବହିରେ ଏକାଥରକେ ସବୁ ରୋଗ କିମ୍ବା ରୋଗ କରୁଥିବା ସବୁ ଜୀବଙ୍କୁ ନେଇ କହିବା ସମ୍ଭବ ନୁହେଁ । ଏଥିରେ ମଶା, ମାଛି, କୃମି, ମାଇଟ୍ ପ୍ରଭୃତିଙ୍କ ପାଇଁ ହେଉଥିବା କେତେକ ରୋଗ କଥା କୁହାଯାଇଛି ।

ଆଶାକରାଯାଉଛି, ସାନ ପିଲାମାନେ ପଢ଼ି ଏଥିରୁ ଉପକୃତ ହେବେ ।

—ଲେଖିକା

# ସୂଚୀପତ୍ର

# ମଶା ଓ ମେଲେରିଆ

ଦଶ ବର୍ଷର ପିଲା ସାନୁ । ତାହାର ହସ ଖେଳରେ ଘର ଖାଲି ଉଠୁଥାଏ ପଡ଼ୁଥାଏ । ସାନୁକୁ ଛଅଦିନ ହେଲାଣି ଜର । ନିତି ସଞ୍ଜ ବେଳକୁ ଖଇଫୁଟା ତାତି ଆସି ଦେହଟାକୁ ତାର ବରଡ଼ାପତ୍ର ପରି ଥରେଇ ଦେଉଛି । ଦେହରେ ଜର ଦୁଇ ଚାରି ଘଣ୍ଟା ରହି ଆପେ ଆପେ ଚାଲିଯାଉଛି । ଜରବେଳେ ସାନୁ ଏଡ଼େ ବିକଳ ହେଉଛି ଯେ, ତାର ବାପା, ମା'ଙ୍କ ଅନ୍ୟ ଭାଇଙ୍କର ଦେହ ସହୁନାହିଁ ।

ଗାଁଠାରୁ ତିନ କିଲୋମିଟର ଦୂରରେ ଡାକ୍ତରଖାନା । ସାନୁର ବାପା ଯାଇ ସେଇଠୁ ଆଣିଛନ୍ତି ଚାରିଟି ବଟିକା । ସାନୁକୁ ପୁଣି କୁଆଡ଼େ ମେଲେରିଆ ହୋଇଛି ବୋଲି ଡାକ୍ତରବାବୁ କହିଲେ । ସାନୁଘରୁ କେତୋଟା ମଶା ଧରି ଆଣି ପରୀକ୍ଷା କରିବେ ବୋଲି ଡାକ୍ତରବାବୁ କହିଲା ପରେ ସାନୁର ବାପା ଆଶ୍ୱସ୍ତ ହେଲେ ।

ତା' ପରଦିନ ସକାଳୁ ସକାଳ ଡାକ୍ତରବାବୁ ସାନୁଘରକୁ ଆସି କେତୋଟା ମଶା ଧରିନେଲେ । ତାଙ୍କ ପାଖରେ ଥିବା ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ସେ ପରୀକ୍ଷା କରିବେ । ଜର

ସହିତ ମଶାର ସମ୍ବନ୍ଧଟା କେହି ବୁଝିପାରିଲେ ନାହିଁ । ଏହି ସମ୍ବନ୍ଧଟିକୁ ବୁଝେଇଦେବା ଲାଗି ଡାକ୍ତରବାବୁ ନାନା ଜାତିର ମଶାଙ୍କର ଛବି ସମସ୍ତଙ୍କୁ ଦେଖେଇଲେ । ମୋଟରେ ପଚିଶ ଜାତିର ମଶା ଅଛନ୍ତି ବୋଲି ଡାକ୍ତରବାବୁଙ୍କଠାରୁ ଶୁଣି ସମସ୍ତେ ଆଶ୍ଚର୍ଯ୍ୟ ହୋଇ ପରସ୍ପରକୁ ଚାହିଁ ରହିଲେ ।




ଡାକ୍ତରବାବୁ ବୁଝେଇଦେଲେ ଯେ ପଚିଶ ଜାତିର ମଶାଙ୍କ ଭିତରୁ ମାତ୍ର ତିନି ଜାତିର ମଶାଙ୍କ ବିଷୟରେ ଆମର ଜ୍ଞାନ ଥିବା ଦରକାର । ଏ ଭିତରୁ ଗୋଟିଏ ହେଲା ମେଲେରିଆ ମଶା । ଇଏ ବସିଲେ ତେରେଛା ହୋଇ ପିନ୍ ପୋଡ଼ା ହେଲା ପରି ଦିଶେ । ଆ’ ଦେହରେ ଟିପି ଟିପି ଚିହ୍ନ ଥାଏ ।

ଏଇ ମଶାର ନାଁ ହେଲା ଆନୋଫିଲସ୍ ମଶା । ଆଉ ଗୋଟିଏ କାତର ମଶା ବସିଲାବେଳେ ସମାନ ହୋଇ ବସେ । ତା' ରଙ୍ଗ କଳା । ସେଇଟି ହେଲା ଗୋଦର ମଶା । ତା' ନାଁ କ୍ୟୁଲେକ୍ସ । ଶେଷଟି ହେଲା ବାଡ଼ ବଗିଚାରେ ରହୁଥିବା ଟିକି ଟିକି ଶାଗୁଆ ମଶା । ଆ'କୁ ଡେଙ୍ଗୁ ମଶା କହନ୍ତି । ତା' ନାଁ ଏଡ଼ିସ୍ । ଏଇ ମଶା କାମୁଡ଼ିଲେ ଡେଙ୍ଗୁ ଜର ହୁଏ । ପୁଣି ସମସ୍ତେ ଜାଣିନ୍ତି ନା—ଏଇ ମଶା ପାଇଁ ମଣିଷକୁ ମସ୍ତିଷ୍କ ଜ୍ୱର ବି ହୋଇଥାଏ ।



ବଡ଼ ମଜା କଥା ହେଲା, ଖାଲି ମାଈମଶା ମଣିଷକୁ କାମୁଡ଼ନ୍ତି । ମଶା ଜାତିରେ ଝିଅଗୁଡ଼ା ଖାଲି ରକତ ଖାଇ ଡାଆଣୀ କହି ଧାନ୍ ହସି ହସି ତା ଭଉଣୀକୁ ଚଢ଼େଇଲା ।

ଝିଅଗୁଡ଼ା ଡାଆଣୀ କାହିଁକି ହେବେ ?—ପୁଅଗୁଡ଼ା ଡରକୁଳା ହେଇଥିବେ ବୋଲି ତା' ଭଉଣୀ କହିଲା ।

ଏଇଥିରୁ ଦୁହିଁଙ୍କର ଝଗଡ଼ା ନଲାଗୁ ବୋଲି ଡାକ୍ତରବାବୁ କଥାଟାକୁ ନ ବଢ଼େଇ କହିଦେଲେ ଯେ ଅର୍ଣ୍ଣିରା ମଶାର ଶୁଣ୍ଢ ଏମିତି ତିଆରି ଯେ ସେଥିରେ ଚମ ଫୁଟି ପାରିବ ନାହିଁ । ଏହା କହି ଡାକ୍ତରବାବୁ ଦୁଇଟି ମଶା ମୁଣ୍ଡର ଛବି ଦେଖେଇଲେ । ଗୋଟିଏ ମାଈ ମଶାର ମୁଣ୍ଡ ଓ ଅନ୍ୟଟି ଅର୍ଣ୍ଣିରା ମଶା ମୁଣ୍ଡର ଛବି ।



ମାଈମଶାର ଶୁଣ୍ଢ



ଅର୍ଣ୍ଣିରାମଶାର ଶୁଣ୍ଢ

ଡାକ୍ତରବାବୁ ପୁଣି କହିଲେ—ମଶାର ମୁଣ୍ଡର ଅଗରେ ଏହାର ଶୁଣ୍ଢ ଥାଏ । ଶୁଣ୍ଢଟି ଦୁଇଫାଳିଆ ଖୋଳରେ ତିଆରି

ଅତି ସରୁ ଓ ତୀକ୍ଷ୍ଣ ନଳୀ ପରି । ମାଈ ମଶାର ଓପରପାଟି ଓ ତଳପାଟି ମଧ୍ୟରେ ପାଟିର ଅନ୍ୟାନ୍ୟ ଅଂଶମାନ ଅତି ସରୁ ଛୁଞ୍ଚ ସଦୃଶ ମୁନିଆଁ ଅଂଶମାନ ରହିଥାଏ । ପାଟିର ଦୁଇ କଡ଼ରେ ଅତି ସରୁଆ ନଳୀ ଆକୃତିର ମାକ୍ସିଲା ବା ଧ୍ୱଂଶକା ଥାଏ । ଧ୍ୱଂଶକାର ଉପର ଅଂଶକୁ ପାଲ୍‌ପ କୁହାଯାଏ । ପାଲ୍‌ପ ମଶାର ସ୍ପର୍ଶେନ୍ଦ୍ରିୟ । ଏହା ସାହାଯ୍ୟରେ ମଶା ଯେ କୌଣସି ଅଂଶକୁ ଛୁଇଁ ଏହା ତା ପାଇଁ ଉପଯୋଗୀ କି ନୁହେଁ ଜାଣିପାରେ ।

ମଶା ମୁଣ୍ଡରେ ମାକ୍ସିଲା ପାଖକୁ ଦୁଇଟି ଅତି ସରୁ ଦନ୍ତୁରିତ ଧାରୁଆ ମାଣ୍ଡିବ୍ଲ ଥାଏ । ଏହାକୁ ମଶାର ଦାନ୍ତ କୁହାଯାଇପାରେ । ଏହି ମାଣ୍ଡିବ୍ଲ ସାହାଯ୍ୟରେ ମଶା ଆମ ଚମକୁ ବା ଦେହର ନରମ ଅଂଶକୁ ଖଣ୍ଡିଆ କରି ଫୋଡ଼ି-ପାରେ । ମଶା ପାଟିର ମଝି ଆଡ଼କୁ ଛୁଞ୍ଚପରି ଅତି ସରୁ ମୁନିଆଁ ଜିଭ ଥାଏ ।

ମଶା ପାଟିର ଅଂଶମାନ ଚମ ଫୁଟାଇ ରକ୍ତ ଶୋଷିବାରେ ସାହାଯ୍ୟ କରନ୍ତି । ଡାକ୍ତରବାବୁଙ୍କଠାରୁ ଏକଥା ଶୁଣି ପିଲାଏ କହିଲେ ଯେ ସତରେ— ମଶାର ଶୁଣ୍ଢ ଫୁଟିଲେ କିପରି କାଟେ ଆମେ ଜାଣିଛୁ । ଠିକ୍ ପିନ୍ ଫୋଡ଼ିଲାପରି ଲାଗେ । ହେଲେ ଅଣ୍ଡିରା ମଶା କାହିଁକି ଚମ ଫୁଟାଇ ପାରେ ନାହିଁ ?

ଡାକ୍ତରବାବୁ କହିଲେ ଅଣ୍ଡିରା ମଶାର ମାଣ୍ଡିବ୍ଲ ଓ ମାକ୍‌ସିଲା କ୍ଷୁଦ୍ର ଓ ଅକାମୀ । ଏହି ପାଲ୍‌ପଗୁଡ଼ିକ ଅତ୍ୟନ୍ତ ବଡ଼ ହୋଇଥିବାରୁ ଅଣ୍ଡିରାମଶା ମଣିଷ ବା ପଶୁର ଚମ ଫୁଟେଇ ପାରେ ନାହିଁ । ପୁଣି ଅଣ୍ଡିରା ମଶାର ମୁଣ୍ଡ କଡ଼ରେ ଥିବା ଆଣ୍ଟେନା ଦୁଇଟି ମଧ୍ୟ ଅଧିକ ଗହଳିଆ । ଏହିସବୁ କାରଣରୁ ଅଣ୍ଡିରା ମଶା କଅଁଳିଆ ପତ୍ର, କାଣ୍ଡ ଏବଂ ଫୁଲରୁ ରସ ଖାଇ ବଞ୍ଚେ । ମାଈ ମଶାଙ୍କର ଶୁଣ୍ଢରେ ଚମ ଫୁଟାଇବା ସହଜ ହୋଇଥିବାରୁ ସେମାନେ ଆମ ଚମ ଫୁଟେଇ ରକ୍ତ ଶୋଷନ୍ତି ।

ଏତକ କହିସାରି ଡାକ୍ତରବାବୁ କହିଲେ ଯେ କେବଳ ମଶା କାମୁଡ଼ିଦେଲେ ମେଲେରିଆ କ ଗୋଦର ବା ଡେଙ୍ଗୁ ଜ୍ୱର ହୁଏ ନାହିଁ । ଜାତିଏ ଜାତିଏ ଜୀବାଣୁଙ୍କ ପାଇଁ ରୋଗସବୁ ହୋଇଥାଏ । ମଶା କେବଳ ଏଇ ଜୀବାଣୁର ବାହକ । ଯେଉଁ ମାଈ ଏନୋଫିଲସ ମଶା ପେଟରେ ମେଲେରିଆ ଜୀବାଣୁ ଥିବ, ସିଏ ମଣିଷକୁ କାମୁଡ଼ିଲେ ଯାଇ ମେଲେରିଆ ଜ୍ୱର ହେବ ।

ମଶା ତ ଏତିକ ବଳଟେ ଜୀବ ! ତା'ର ଶୁଣ୍ଢବାଟେ ବାହାରୁଥିବା ଜୀବାଣୁ କେତେ ଛୋଟ ହୋଇ ନଥିବ ! ସତରେ ହଜାରେ କ ତା'ଠାରୁ ବେଶି ଜୀବାଣୁ ଏକାଠି ହେଲେ ସୋରିଷଟିଏ ଭଳି ଦେଖାଯିବ । ମଶା ପେଟରେ ପାଞ୍ଚ ଶହ ତ ପାଚି ପାଖରେ ଦୁଇଲକ୍ଷ ଜୀବାଣୁ ଥିବେ ।

"ଆରେ ବାପ୍‌ରେ ସାନ ସାପର ତ ବହୁତ ବେଶି ବିଷ ! ଏ କଥାଟା ତେବେ ଏଇଠି ପୂରା ଠିକ୍ ।" ଏ କଥା କହିଲା ସାନ୍ନୁର ଭାଇ ବାପୁ ।



ମ୍ୟାଲେରିଆ ଜୀବାଣୁ



ଗୋଦର ଜୀବାଣୁ

ମେଲେରିଆ ଜୀବାଣୁ ଦଶଟି ରୂପ ଧରି ମଶା ଓ ମଣିଷ ଭିତରେ ଆତଯାତ ହେଉଥାଏ । ମଶା ଦେହରେ ଏଥିରୁ

ଗୃହରେ୍ଟି ରୂପ ଓ ମଣିଷ ଦେହରେ ବାକୀ ଛଅଟି ରୂପ ହୁଏ । ସବୁଠ ମଜାକଥା ଏ ଜୀବାଣୁ ଗୋଟିକରୁ କୋଟିଏ ହୁଅନ୍ତି ଏବଂ ଠିକଣା ବେଳରେ ମଶା-ମଣିଷ-ମଶା ଏମିତି ଅଦଳ ବଦଳ ହୋଇ ପାରିଲେ ଇଏ ଜମାରୁ ମରେ ନାହିଁ । ଏହି ଜୀବାଣୁ ପୃଥିବୀର ପ୍ରଥମ ପ୍ରାଣୀମାନଙ୍କ ଶ୍ରେଣୀର ଅନ୍ତର୍ଗତ । ଏହି ଶ୍ରେଣୀକୁ ପ୍ରୋଟୋଜୋଆ କୁହାଯାଏ ।

"ଦେହ ବହି ପୁଣି ଜୀବ ମରଇ ନାହିଁ ।" ଏଡ଼େ କଥା ସାନ୍ କ ତା ଭାଇଭଉଣୀ, କ ତା'ର ବାପ ମା' କେହି କେବେ ଶୁଣି ନଥିଲେ । ତେଣୁ ସମସ୍ତେ ମେଲେରିଆ ଜୀବାଣୁର ଛବିକି ଚାହିଁ ରହିଲେ ।

କି ବିଚିତ୍ର ଏ ଜୀବାଣୁ ! ଖାଲି ଆଖିକି ଦିଶିବ ନାହିଁ । ଦେହ ଅଛି, ହେଲେ ଆଖି, କାନ, ଗୋଡ, ହାତ କି ପେଟ ପିଠି କିଛି ନାହିଁ । ପିଲାଏ ହସି ହସି କହିଲେ, "ଏଇଟା କ'ଣ ଗୋଟେ ମାଦଳ କି ?"

ମଶା ଆମ ଦେହର ଯୋଉଠି କାମୁଡ଼ିଲେ ବି ହଜାର ହଜାର ଜୀବାଣୁ ଦେହରେ ପଶି ଯକୃତ ଭିତରକୁ ଚାଲିଆସନ୍ତି । ସେଠି ବାର ଚଉଦ ଦିନ ରହି ଲକ୍ଷ ଲକ୍ଷ ଜୀବାଣୁ ତିଆରି ହୁଅନ୍ତି । ଏହି ସମୟରେ ଜ୍ୱର ହୁଏ ନାହିଁ । ଏହାପରେ କେତେକ ଜୀବାଣୁ ଆମ ଦେହ ଭିତରେ ଥିବା ଯକୃତ୍ ଭିତରେ

ରକ୍ତ ବଂଶ ବଢ଼େଇବାରେ ଲାଗିଯାଆନ୍ତି ଓ ବାକୀତକ ରକ୍ତକୁ ଆସି ଲୋହିତ ରକ୍ତକଣିକାକୁ ଖାଇଯାଆନ୍ତି । ସେତକବେଳେ




ଜ୍ୱର ହୁଏ ଓ ପୁଣି ମଶା କାମୁଡ଼ି ଆମ ଦେହରୁ ରକ୍ତ ଶୋଷିଲା ବେଳେ ଜୀବାଣୁ ତା ଦେହକୁ ନେଇ ସେଠାରେ ବଂଶ ବିସ୍ତାର କରେ ।

ମେଲେରିଆ ପାଇଁ ଔଷଧ ଖାଇଲେ ରକ୍ତରୁ ଜୀବାଣୁ ମରନ୍ତି; ମାତ୍ର ଯକୃତ ଭିତରେ ଥିବା ଜୀବାଣୁ ମରିବା ବଡ଼ କଠିନ । ବେଶି ଦିନ ଜ୍ୱର ହେଲେ ପ୍ଳୀହା ବଢ଼େ । ରକ୍ତହୀନତା ଦେଖାଦିଏ । ଆଗେ ମେଲେରିଆରେ ହୋଇ ବହୁତ ଲୋକ ମରୁଥିଲେ । ଏଇ ଜ୍ୱରର କଷ୍ଟ ତ ସାନୁ ହୋଇଥିଲା । ମଶା

ପାଇଁ ମେଲେରିଆ ହୁଏ ଜାଣିଲା ପରେ ଏବେ ମଶା ମାରିବା କଥା ସିଏ ଭାବିଲା ।

ସବୁତକ ମଶା ମାରିବା ସହଜ ନୁହେଁ । ଏହା ବ୍ୟତୀତ ମଶା ଏବଂ ମଶା ଛୁଆଙ୍କୁ ମାଛ ଆଦି କେତେ ଜୀବ ଖାଇଥାନ୍ତି । ମଶା ବଂଶ ନିପାତ ହେଲେ ସେମାନେ ପୁଣି କ'ଣ କରିବେ ? ମଶା ଦାଉରୁ ରକ୍ଷା ପାଇବା ପାଇଁ ଅଲଗା ବାଟ ଭାବିବା ଦରକାର ।

ଘର ଭିତର ସଫା ରଖିଲେ ଏବଂ ଘରେ ଆଲୁଅ ଓ ପବନ ଚଳପ୍ରଚଳ ହେଲେ ମଶା ରହି ପାରିବେ ନାହିଁ । ମଶାମାନେ ପାଣିରେ ଅଣ୍ଡା ଦେଇ ଛୁଆ ଫୁଟାଉଥିବାରୁ ଘର ଚାରିପାଖରେ ଯେପରି ପାଣି ଜମି ନରହେ ସେତକ ଦେଖିବା କଥା । ସନ୍ତସନ୍ତିଆ ଜାଗା ଓ ନାଳ ରହିଲେ ମଶା ହେବାର ଡର ଥାଏ । ପ୍ରତିଦିନ ଘରେ ନିମ୍ବପତ୍ର ଓ ଝୁଣା ଦେଲେ ଘରୁ ମଶା ବାହାରିଯିବେ । ପ୍ରକୃତିରେ ପରିବେଶକୁ ସୁନ୍ଦର ଓ ସ୍ୱାସ୍ଥ୍ୟକର ରଖିଲେ ଓ ନିଜର ଅଭ୍ୟାସ ବଦଳାଇ ଦେଲେ ମଶା ଦାଉରୁ ରକ୍ଷା ମିଳିବ । ଏତିକ ପରାମର୍ଶ ଦେଇସାରି ଡାକ୍ତରବାବୁ ସାନୁ ଘରୁ ବିଦାୟ ନେଲେ ।

---

# ଅଜାଙ୍କ ଅକଲ ଗୁଡ଼ୁମ୍

ତୁଷାରବାବୁ ସବୁଦିନେ ପାନ ଖାଆନ୍ତି ନାହିଁ । କେବେ କେମିତି ଇଚ୍ଛା ହେଲେ ଘର ପାଖ ଦୋକାନରୁ ଦ'ଖଣ୍ଡ ସାଦା ପାନ କିଣି ଖାଇଦିଅନ୍ତି । ହେଲେ ଯୋଉଦିନ ପାନ ଖାଇଲେ ତା' ଆରଦିନ ତାଙ୍କର ନାଲ ଝାଡ଼ା ହେଲା । ତୁଷାରବାବୁ



ନିଜେ ଡାକ୍ତର । କେତେ ରୋଗୀ ଭଲ କରୁଛନ୍ତି । ଅଥଚ ପାନ ଖାଇକି ତାଙ୍କ ପେଟ ଖରାପ ହେଉଛି !

ପାନପତ୍ରର ବତୁରିଥିବା ପାଣିରେ ଦୋଷ ଅଛି ଭାବି ଏଣିକି ତାଙ୍କ ଘରୁ ସିଝା ପାଣି ଆଣି ସେଥିରେ ପାନପତ୍ରର ବତୁରେଇବା ଲାଗି ସେ ଦୋକାନୀକୁ କହିଲେ । ସେଇଥି କାଳପରେ ସିଏ ଆଉ ପାନ ଖାଇକି ନାଲି ଝାଡ଼ାରେ ପଡ଼ି ନାହାନ୍ତି । ତୁଷାରବାବୁଙ୍କ ଝିଅ ମାମିଠାରୁ ଏକଥା ସାନ୍ତ ଶୁଣିଥିଲା ।

କେଇଦିନ ପରେ ସାନ୍ତୁ ତା' ମାମୁଘରକୁ ଗଲା । ଛ' ସାତ ଦିନପରେ ସେଠି ତା'ର ପେଟ ଖରାପ ହେଲା । କେତେବେଳେ ପତଳା ଝାଡ଼ା ପୁଣି କେତେବେଳେ ନାଲି ଝାଡ଼ା । ସେଇଠୁ ତା'ର ତୁଷାରବାବୁଙ୍କ କଥା ମନେପଡ଼ିଗଲା । ମାମୁଘରେ ପାଣି ସିଝେଇ ପିଇବା ପାଇଁ ସେ ସମସ୍ତଙ୍କୁ କେତେ ବୁଝେଇଲା । ହେଲେ ମାମୁଘରେ କଳପାଣି ସେଥିରେ କିଛି ଦୋଷ ନଥାଏ ବୋଲି ଅଜା କହିଲେ ।

ସାନ୍ତର ଅଜା ଜଣେ ବଡ଼ ବଇଦ । ସିଝେଇ ଦେଲେ ପାଣିର ଗୁଣ ଚାଲିଯାଏ ବୋଲି ତାଙ୍କର ଧାରଣା । ସାନ୍ତର ପଢ଼ିଥିବା କି ଶୁଣିଥିବା କଥାକୁ କେହି ଶୁଣିଲେ ନାହିଁ । ମାତ୍ର କେତେଦିନ ପରେ ଅଜାଙ୍କର ପେଟ ଖରାପ ହେଲା । ପାଇଖାନାରେ ସେ ଥରେ ପଶିଲେ ଯେ ଘଣ୍ଟାଏ ପର୍ଯ୍ୟନ୍ତ ବାହାରିଲେ ନାହିଁ ।

ଏଥର ସାନ୍‌ର ଖୁସି କିଏ ଦେଖେ ! ପାଇଖାନାରେ ଅଜା ଶୋଇଗଲେ କି କହି ସେ ନାଚୁଥାଏ । ଅଜାଙ୍କୁ ବିରକ୍ତ ଓ ବ୍ୟସ୍ତ ଲାଗିଲେ ବି ପ୍ରତି ଅଧଘଣ୍ଟାରେ ପାଇଖାନାକୁ ଦୌଡ଼ି ଦୌଡ଼ି ଘରି ଦେଖେଇବାକୁ ତାଙ୍କ ଆଉ ବେଳ ମିଳିଲା ନାହିଁ । ଅଜାଙ୍କ ପାଇଁ ସମସ୍ତେ ବ୍ୟସ୍ତ ହେଲେ । ଡାକ୍ତରଙ୍କଠାରୁ ଔଷଧ ଆସିଲା । ଔଷଧ ଖାଇବା ସାଙ୍ଗକୁ ପିଇବା ପାଣିକୁ କୋଡ଼ିଏ ପଚିଶ ମିନିଟ୍ ସିଝାଇ ଥଣ୍ଡା କରି ପିଇବାଲାଗି ଡାକ୍ତର ପରାମର୍ଶ ଦେଲେ ।

ଚାରିଦିନ ପରେ ଅଜା ଭଲ ହୋଇଯିବାରୁ ପେଟ କାହିଁକି ଖରାପ ହେଲା ବୋଲି ବିଚାର ପଡ଼ିଲା । ସବୁ ତ ଠିକ୍ ଥିଲା । ଏଇ ସାନ୍ ରୋଗ ଆଣିଲା ବୋଲି କହିବାରୁ ସାନ ରୁଷିଲା । ବାପା ପାଖକୁ ଯିବାକୁ ବାହାରିଲା । ବହୁତ ଗେହ୍ଲା କରି ବୁଝାସୁଝା କଲା ପରେ ସିଏ ଥୟ ଧରିଲା ।

ସେଦିନ ଖିଆପିଆ ପରେ ସମସ୍ତେ ଗପ କରୁଥିଲେ । ଅଜା, ଆଈ ଓ ମାମୁ ମାଈଙ୍କ ସାନ୍ ଡା ବହିରୁ କେତେ ଜାତି ଜୀବଙ୍କର ଛବି ଦେଖେଇଲା । ଏମିତିକା ଜୀବ କେହି ଜାଣି ନଥିଲେ । ଏମାନେ ପାଣିରେ ଥାଆନ୍ତି ଅଥଚ ଖାଲି ଆଖିକି ଦିଶନ୍ତି ନାହିଁ ବୋଲି ସାନ୍ ବତେଇ ଦେଲା । ସେଥିଲାଗି

ମେମାନେ ଏମାନଙ୍କୁ ଦେଖି ନଥିଲେ । ଏଭଳି ଜୀବଙ୍କୁ ଅଣୁବୀକ୍ଷଣ ଯନ୍ତ୍ର ବା ମାଇକ୍ରୋସ୍କୋପ୍ ସାହାଯ୍ୟରେ ଦେଖିହୁଏ ।




ଆଖିକୁ ପାଣି ପରିଷ୍କାର ଦିଶିଲେ ବ ସେଥିରେ ଏମିତିକା ଜୀବ ଶହ ଶହ ସଂଖ୍ୟାରେ ଥାଇପାରନ୍ତି । ଟୋପାଏ ପାଣିରେ ଏମିତିକା ଜୀବଙ୍କ ସଂଖ୍ୟା ଗୋଟିଏ ବଡ଼ ଗାଁର ସମୁଦାୟ ଲୋକଙ୍କଠାରୁ ଅଧିକ ହୋଇପାରେ । ଏହି ଜୀବଙ୍କ ଭିତରୁ କେତେକ ବେଳେ ବେଳେ ଆମକୁ ଜ୍ୱର ହଇରାଣ ହରକତ କରନ୍ତି । ପାଣିରେ ରହୁଥିବା ଏ ପ୍ରକାର ଜୀବଙ୍କ ଭିତରେ

ଜିଆର୍ଡ଼ିଆ ଓ ଆମିବା ବୋଲି ଦୁଇ ଜାତିର ଜୀବ ଅଛନ୍ତି । ପେଟ ଖରାପ ଲାଗି ସେମାନେ ହିଁ ଦାୟୀ । ସେହି ଜିଆର୍ଡ଼ିଆ କ





ଜିଆର୍ଡ଼ିଆ ଆମିବା ବାଲାଣ୍ଟିଡ଼ିୟମ୍

ଆମିବା ରହିଥିବା ପାଣି ପିଇଲେ କିମ୍ବା କାରବାର କଲେ ଖାଇବା ଜିନିଷରେ ଏମିତିକି ବାସନରେ ଲାଗି ମଧ୍ୟ ସେମାନେ ପେଟକୁ ଯାଆନ୍ତି ।

ମାଛି, ଅସରପା ପରି କୀଟପତଙ୍ଗ ଚଲପ୍ରଚଳ କରୁଥିବା ଜାଗାରେ ମଧ୍ୟ ଜିଆର୍ଡ଼ିଆ ବା ଆମିବା ରହିପାରନ୍ତି ଓ କୀଟ ପତଙ୍ଗଙ୍କ ଗୋଡ଼ରେ ଲାଗିଯାଆନ୍ତି । ଏମିତିକା ମାଛି ଅସରପା ଖାଦ୍ୟପଦାର୍ଥରେ ବସିଗଲେ କି ଚାଲିଗଲେ ଖାଦ୍ୟରେ ଲାଗି ସେହି ଜୀବମାନେ ଆମ ପେଟକୁ ଯାଆନ୍ତି । ସେମାନଙ୍କ ଦ୍ୱାରା ସଂକ୍ରମିତ ପାଣିରେ ବାସନ ଧୋଇଲେ ବି ବାସନରେ ଲାଗି ସେମାନେ ଶେଷରେ ଆମକୁ ସଂକ୍ରମିତ କରନ୍ତି ।

ଆମ ଦେହରୁ ଏହି ଜୀବମାନେ ଝାଡ଼ାସହ ବାହାରକୁ ଆସନ୍ତି । ମାଛି ଓ ପାଣି ସାହାଯ୍ୟରେ ଏମାନେ ପୁଣି

ପୃଷ୍ଠଭାଗରେ ବ୍ୟାପିଥାନ୍ତି । ପାଣିକୁ ଭଲକରି ଫୁଟାଇଦେଲେ ଏମାନେ ମରିଯାଆନ୍ତି ।

ଏହି ଜୀବମାନଙ୍କ ପାଇଁ ନାଳଝାଡ଼ା ହେଉଛି କି ବୋଲି ଆଈ ପଚାରିଲେ । ଅନ୍ୟ କାରଣରୁ ହୋଇପାରେ । ମାତ୍ର ଏମାନେ ହେଲେ ମୁଖ୍ୟ କାରଣ । ତେବେ ସିଧାପାଣି ପିଇଲେ ଏମିତିକା ରୋଗର ଶତକଡ଼ା ଷାଠିଏ ଭାଗ ଡର ଚାଲିଯିବ । ଖାଇବା ଜିନିଷରେ ମାଛି, ଅସରପା ବସି ଆମପାଇଁ ଆହୁରି କେତେ ରୋଗ ବୋହି ଆଣନ୍ତି । ସେମାନଙ୍କୁ ନିପାତ କରିଦେଲେ ତ ସବୁଠୁ ଭଲ ହୁଅନ୍ତା ।

"ଅନ୍ୟକୁ ନ ମାରି ନିଜକୁ ଓ ନିଜର ଅଭ୍ୟାସକୁ ସଜାଡ଼ିବା ଦରକାର" ଏକଥା ସାନୁ କହିଲା । ସାନ ସାନ ପିଲା ହେଲେ ବି ଏତେ ଭଲ କଥାଟିଏ କହିବାରୁ ତାକୁ ସେଦିନ ସମସ୍ତେ ବହୁତ ସ୍ନେହ କଲେ ।

—o—

# ହାତରେ ନ ମାର ଭାତରେ ମାରେ

ବହୁତ ବର୍ଷପରେ ଗୀତାର ଦେଖାହେଲା ତା’ ବଉଳ ସୀତା ସହିତ । ଗୀତା ଓ ତା’ ଛୁଆଙ୍କୁ ଦେଖିଲେ ସେମାନେ କେତେ ସୁଖରେ ଅଛନ୍ତି ଜାଣିହେବ । ଅଥଚ ସୀତା ? ପିଲାଦିନର ଡଉଲଡାଉଲ ଚେହେରା ଆଜ ହାଡ଼ମାଳରେ ପୂର୍ଣ୍ଣ । ସୀତାର ପିଲାଏ ବି ସେମିତି ରୁଗ୍ଣ ଦିଶୁଥାନ୍ତି ।

ପ୍ରଥମ ଦେଖାରେ ଦୁହେଁ ଅବାକ୍ ହୋଇଗଲେ । କାହାର ପାଟିରୁ କଥା ବାହାରିଲା ନାହିଁ । କେତେବେଳ ପରେ ଗୀତା ପାଟିରୁ ବାହାରିପଡ଼ିଲା "ବଉଳ ତୁ କ’ଣ ହେଇଛୁ ?"

ରାତିରେ ଦୁଇସାଙ୍ଗ ଗପସପ ହେଉଥିଲେ ସୀତାର ସାନ ପୁଅ ପାଟିକରି କାନ୍ଦି ଉଠିଲା । ସୀତା ବରକ୍ତିରେ ଉଠି ଯାଇ ରାଧୁଆ ପିଣ୍ଡିରୁ ଦଶିପୋକ କାଢ଼ି ବସିଲା । ରାଧୁଆ ଉପର ଦାଇ ଦନେଇ "କୁମ୍ଭୁରି ଦେବ ହଗେଇ ନେବ" କହି କହି ହାତ ଟିପରେ ଦୁଇଟା ଦଶିପୋକ ଦଳି ପକେଇଲା । ମନରେ ବିକାର ଆସିଲେ ବି ବଉଳର ଦୁର୍ଦ୍ଦଶା ଦେଖି ଗୀତା ଚୁପ୍ ରହିଲା ।

ସୀତାଘର ବାଡ଼ିରେ କେତେ ଜାତିର ଫଳ ପନିଅର ହୋଇଥିଲା । ଆରଦିନ ସକାଳୁ ବାଡ଼ିରେ ବୁଲୁ ବୁଲୁ ଗୀତା

ଦେଖିଲି ଗୁଧୁଆ ସେହି ବାଡ଼ି ଭିତରେ ଝାଡ଼ା ବସିଛି । ପୁଣି ନେଉଟିଆ କିଆରୀ ଭିତରେ ଗୁଧୁଆକୁ ଛଡ଼େଇଦେଲି ସୀତାର ବଡ଼ଝିଅ । ଆଉ ସେଇ କିଆରୀ ପାଖରେ କାକୁଡ଼ି ଗଛରୁ ତଳେ ଲେଟିଥିବା କାକୁଡ଼ିଟାଏ ତୋଳି ସମସ୍ତେ ଖାଇଲେ ।

ପିଲାଙ୍କର ଏପରି ଅଭ୍ୟାସ, ପେଜୁଆ ଆଖି, ବାହାରକୁ ଓହଳି ପଡ଼ିଥିବା ବଡ଼ ପେଟ ଓ ସମୁଦାୟ ଚେହେରାରୁ ଲାଗୁଥାଏ ଯେ ସେମାନଙ୍କର ପେଟରେ କୃମି ଅଛନ୍ତି । ସୀତାକୁ ଏହା କହିବାରୁ ମଝିରେ ମଝିରେ କାହା ଝାଡ଼ାରେ ତ କାହା ବାନ୍ତିରେ ଜିଆ ପଡ଼ୁଛି ବୋଲି ସେ କହିଲି । ବଉଳର ପିଲାଙ୍କଠାରେ ଦଣ୍ଡିପୋକ ହୋଇଥିବାର ଗୀତା ନିଜେ ଦେଖିଥିଲି ।

ସୀତା ପରିବାରର ଅଧା ଦୁର୍ଦ୍ଦଶା କୃମିଙ୍କ ପାଇଁ । ସେମାନେ ଆମକୁ ହାତରେ ନ ମାରି ଭାତରେ ମାରନ୍ତି । ମଣିଷ ଯେତେ ଖାଏ ତାର ଶତକଡ଼ା ଷାଠିଏ ଭାଗ ଦେହ ଗ୍ରହଣ କରେ । ହେଲେ ସେଇଥିରୁ ଯଦି ପୁଣି କୃମିମାନେ ଭାଗ ବସିବେ ଆମ ଦେହରେ ଆଉ ଲାଗିବ କ'ଣ ? ତେଣୁ ଯଦି କୃମିମାନେ ଏତେ ପରିମାଣର ଖାଇଯିବେ ତେବେ ଦେହ ଭଲ ରହିବ ନା ସୁଖ ମିଳିବ ?

ଆମ ଦେହଟି କୃମିମାନଙ୍କର ଗନ୍ତାଘର । ମାତ୍ର ଆମ ଅଞ୍ଚଳ ଓ କୃମିଙ୍କର ଅପକାରିତାକୁ ବିଚାର କରି ଆମେ ତିନୋଟି ପ୍ରକାର କୃମିଙ୍କ ଲାଗି ସାବଧାନ ହେବା ନିତାନ୍ତ



ହୁକ୍‌ୱର୍ମ ମୁଣ୍ଡ



ହୁକ୍‌ୱର୍ମ ଲାଞ୍ଜ



ଅଣ୍ଡିରା



ମାଈ

ହୁକ୍‌ୱର୍ମ





ଦଣ୍ଡିପାକ

ଆବଶ୍ୟକ । ଏହି ତିନୋଟି ହେଲେ ଦଣ୍ଡିପୋକ, ଜିଆ ବା କେଞ୍ଚୁଆ ଓ ଅଙ୍କୁଶକୃମି ବା ହୁକ୍‌ଓ୍ୱର୍ମ । ଏହି ତିନୋଟିଯାକ କୃମି ଆମର ଅଭ୍ୟାସ ଓ ଚଳଣି ଯୋଗୁ ହୋଇଥାନ୍ତି । ଏଥିରେ ଧନ୍ଦ, ଗରିବ କି ପାଠୁଆ-ଅପାଠୁଆ କିଛି ବାଛ ବିଚାର ନାହିଁ । ଦଣ୍ଡିପୋକ ଅଣ୍ଡାପାରିବା ନିମନ୍ତେ ମଳଦ୍ୱାର ମୁହଁକୁ ଆସି କାମୁଡ଼େ । ସେତିକବେଳେ ଆମେ ପିଚ୍ଛ କୁଣ୍ଡାଉ । କୁଣ୍ଡାଇ ବା-ବେଳେ ଲୁଗା ଭେଦ ନଖ ସନ୍ଧିରେ ତା ଅଣ୍ଡା ଲାଗିରହେ । ଖାଇବା ସମୟରେ କୃମି ଅଣ୍ଡା ନଖରୁ ପାଟିକୁ ଯାଇ ସେଠୁ ପେଟକୁ ଚାଲିଯାଏ । ତେଣୁ ପିନ୍ଧାଲୁଗା, ବିଛଣାପତ୍ର, ପାଣି ଓ ଖାଦ୍ୟବାଟେ ଦଣ୍ଡିପୋକ ଅଣ୍ଡା ଆମ ପେଟରେ ପଶେ ।

ଦଣ୍ଡିପୋକ ଅଣ୍ଡା ଏତେ ସହଜରେ ଏତେ ବାଟରେ ଆମର ପେଟରେ ଯାଇ ପହଞ୍ଚିଯାଏ ଜାଣି ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ଏହି କୃମି ସାଧାରଣତଃ ରାତିରେ ମଳଦ୍ୱାର ମୁହଁକୁ ଆସେ । ରାତିରେ ମଳଦ୍ୱାର ମୁହଁରୁ କୃମି ଅଣ୍ଡା ପିନ୍ଧାଲୁଗା ଭେଦକରି ବିଛଣାକୁ ମଧ୍ୟ ଚାଲିଆସିଥାଏ ।

ପେଟରେ ହେଉଥିବା ଜିଆ ବାଡ଼ିବଗିଚାର ମାଟିରେ ଥିବା ଜିଆଠାରୁ ଅଲଗା । ପେଟରୁ ଜିଆ ଅଣ୍ଡା ଝାଡ଼ାରେ ବାହାରି ମାଟିରେ ବହୁତଦିନଯାଏ ସେମିତି ରହିପାରେ । ସେମିତିକା ମାଟି ଖୋଳାଖୋଳି କଲେ, ଗଛପତ୍ର

ଲଗାଇଲେ ହାତ ନଖରେ ଲାଗି ଜିଆ ଅଣ୍ଡା ଆମ ପେଟକୁ ଯାଏ । ସେପରି ସଂକ୍ରମିତ ଜାଗାରେ ହୋଇଥିବା ଫଳ-ପନିଅରରେ ମଧ୍ୟ ଏ ଅଣ୍ଡା ଲାଗିରହି ଆମ ପେଟକୁ ଯାଇପାରେ ।



ହୁକ୍‌ୱର୍ମ ବା ଅଙ୍କୁଶକୃମି ଆମର ସବୁଠାରୁ ବେଶି କ୍ଷତି କରେ । ଏହାର ଅଣ୍ଡା ଝାଡ଼ାରେ ବାହାରି ଓଦା ଓ ସନ୍ତସନ୍ତିଆ ମାଟିରେ ତହିଁରୁ ଛୁଆ ଫୁଟେ । ମାଟି ଶୁଖିଗଲେ ଏ ଛୁଆ ମରିଯିବେ । ଛୁଆ ଥିବା ମାଟିରେ ଖାଲି ପାଦରେ ଚାଲିଲେ କିମ୍ବା ଖାଲି ହାତରେ କାମକଲେ ହୁକ୍‌ୱର୍ମ ଛୁଆ ଚମ

ଫୁଟେଇ ଦେହରେ ପଶେ । ଏହି ଛୁଆର ଜୀବନ ମଣିଷ ବାହାରେ ମୋଟେ ମାସେ ଦେଢ଼ମାସ । ମାସେ ଦେଢ଼ମାସ ଭିତରେ ଇଏ ଯଦି ଦେହ ଭିତରେ ପଶି ନପାରେ ତେବେ ଆପେ ଆପେ ମରିଯିବ ।

ଲୋକ ଝାଡ଼ାଫେରୁଥିବା ଜାଗାରେ ଖାଲି ପାଦରେ ଚଲାବୁଲା କରିବ ନାହିଁ କି ସେମିତି ଜାଗାରେ ଫଳିଥିବା ଫଳପନିଅରି ଖାଇବ ନାହିଁ । କୃମିମାନଙ୍କ ଦାଉରୁ ରକ୍ଷା ପାଇବାପାଇଁ ଝାଡ଼ାଫେରିବା ଅଭ୍ୟାସ ସମସ୍ତେ ବଦଳାଇବା ଦରକାର । ପାଇଖାନା ନ ଥିଲେ ମାଟିରେ ଦୁଇ ତିନିଫୁଟ ଗହୀର ଗାତ ଖୋଳି ଝାଡ଼ା ଫେରିଲେ ବି କୃମି ହେବେ ନାହିଁ ।

ଏକ ଲମ୍ବରେ ସୀତା ସବୁ ଶୁଣୁଥିଲା । ଶେଷରେ କହିଲା ଗରିବଗୁରୁବା ଲୋକ ଭଲରେ ଦିମୁଠା ଖାଇବାକୁ ପାଉନାହାନ୍ତି । ଯାହା ଦି'ଟା ଖାଇବେ ସେତିକ ପୂରା କାମରେ ଲାଗିବା ଦରକାର । ଏ ପରପଞ୍ଚ ଆ କୃମି ସେଥିରୁ ଭାଗବସିଲେ ସତରେ ଆମର ଦେହରେ କ'ଣ ଲାଗିବ ?

ସୀତାର ବଡ଼ପୁଅ ଗୀତାମାଉସୀ କହୁଥିବା ସବୁତକ କଥା ଅତି ମନପ୍ରାଣ ଦେଇ ଶୁଣୁଥିଲା । ତାହାର ମନକୁ ଗୀତା-ମାଉସୀର କଥା ସବୁ ଠିକ୍ ପାଇଲା । ଗାତ ପାଇଖାନା ଖୋଳିବାକୁ ସିଏ ସାଙ୍ଗେ ସାଙ୍ଗେ ବାହାରିପଡ଼ିଲା ।

ସତରେ ଏ କୃମିମାନେ କ'ଣ ? ମଣିଷର ଅଜାଣତରେ ସେମାନେ କେତେ କ୍ଷତି ନ କରନ୍ତ ! ଏତେକଥା ଭିତରେ ପଶୁଛନ୍ତି କିଏ । କିନ୍ତୁ ସେତିକି ପାଇଁ ତା'ର ଭାଇ, ଭଉଣୀ, ବୋଉ, ବାପାଙ୍କର ଚେହେରା ଏମିତି ହୋଇଛି । ସେମାନେ କେତେ ହଇରାଣ ନ ହେଉଛନ୍ତି । ସତରେ ଗୀତା-ମାଉସୀ ଯେତେ କଥା ତାକୁ ସବୁ କହିଲ- ମନେରଖି କାମ କରିଯିବା ଦରକାର । ତାହାହେଲେ ସମସ୍ତେ ଭଲରେ ରହିବେ ।

—୦—

# ମାଛି ପାଇଁ ପୁଣି ରୋଗ !

ଗାଁ ଆଡ଼େ ବୁଲି ଆସିବାକୁ ରାମବାବୁଙ୍କର ବେଳ ନଥାଏ । ସହରରେ ରହନ୍ତି । ହେଲେ ଗାଁ ବିଲ, ତୋଟା, ଗଛ, ମାଳ ସବୁ ତାଙ୍କର ମନକୁ ଢେର ଟାଣୁଥାଏ । ପିଲାଏ ତାଙ୍କର ସହରରେ ରହି ଗାଁର ପୂନଅଁ ପରବ କି ପିଠାପଣାର ସୁଆଦ କିଛି ଜାଣିପାରୁ ନାହାନ୍ତି । ସେଥିପାଇଁ ଏଥର ରଜ ବେଳକୁ ବହୁତ କଷ୍ଟରେ ସାତଦିନ ଛୁଟି ନେଇ ସେ ଗାଁକୁ ଆସିଲେ ।

ରାମବାବୁଙ୍କ ପିଲାଦିନର ରଜମଉଜ ଆଉ ନାହିଁ । ସବୁ ତ ବଦଳିଗଲାଣି । ପୂନଅଁ ପରବ ବି ବଦଳିଯିବ । ତଥାପି ଗାଁର ଦୋଳି, ରଜ, ପୋଡ଼ପିଠା ପିଲାମାନଙ୍କୁ ବହୁତ ନୂଆ ଲାଗୁଥାଏ । ସକାଳୁ ରାତି ଦଶଟାଯାଏ ପିଲାଏ ଦୋଳି ଖେଳୁଥାନ୍ତି । ଗାଁ ପିଲାଏ ଯେତେ ଉଚ୍ଚକୁ ଦୋଳି ବୋହି ଖେଳୁଥାନ୍ତି, ରାମବାବୁଙ୍କ ପିଲାଙ୍କୁ ତାହା ଦେଖି ଭୟ ଲାଗୁଥାଏ । ଗାଁ ପିଲାଙ୍କର ଦୋଳି ଖେଳା ସାଙ୍ଗକୁ ଗୀତ ରାମବାବୁଙ୍କର ପିଲାଙ୍କ ମନକୁ ଉଚ୍ଚାଟ କରୁଥାଏ ।



ଦୋଳ ଖେଳ ନଶାରେ ପିଲାଏ ଦୁଃଖ ଶୋଷ ଭୁଲି ଯାଇଥିଲେ । ସେହି ଦୋଳରେ ବସି ଆମ୍ବ, ପଣସ, ପୋଡ଼ପିଠା ସବୁ ଖିଆ ଚାଲିଥାଏ । ରଜ ପାଗଟା ବି ଭଲ ହୋଇଥାଏ । ତିନ ଚାରିଦିନ ପୂର୍ବରୁ ଅସରାଏ ମେଘ ହୋଇ ଖରାଟାଣ ବି ଜଣାପଡ଼ୁ ନଥାଏ । ଆକାଶରେ ଆହୁରି ମେଘ ରହି ସୂର୍ଯ୍ୟ ଦେବତାଙ୍କୁ ଘୋଡ଼େଇ ପକାଉଥାଏ । ଛୁଇ ଆଲୁଅର ଖେଳ—ପୁଣି ଆମ୍ବ ତୋଟା ଭିତରେ ଏସବୁ ସହରରେ କାହୁଁ ଆସିବ ?

ପିଲାଙ୍କର ସିନା ମଉଜ । ହେଲେ ରାମବାବୁ ସହରରେ ରହି ସହରୀ-ଜୀବନରେ ଅଭ୍ୟସ୍ତ ହୋଇଗଲେଣି । ଗାଁର ଶିକ୍ଷାକଣା ଲୋକ ପଦେ' ଦି ପଦ କଥା କହି କେମିତି ଦୂରେଇ ରହୁଥାନ୍ତି । ଯେମିତି ସେମାନଙ୍କ ସହ ସେ ମିଶି ପାରୁନାହାନ୍ତି । ରାମବାବୁଙ୍କୁ ଏସବୁ ଅଲଗା ଅଲଗା ଓ ଖାପଛଡ଼ା ଲାଗୁଥାଏ ।

ତା ସାଙ୍ଗକୁ ଗାଁରେ ଏତେକ ମଶା ଆଉ ମାଛି ! ମଶା ତ କେବଳ ରାତରେ ବାହାରୁଛନ୍ତି । ତେଣୁ ରାତରେ ମଶାରୀ ଟାଣି ଶୋଇଲେ ତାଙ୍କ ଦାଉ ବାଧେ ନାହିଁ । ହେଲେ ଏ ଦୁଷ୍ଟ ମାଛି ଦିନସାରା ହଇରାଣ କରୁଥିବେ । ପଣସ ଦିଟା ଖାଇଲେ କି ଆମ୍ବଟାଏ ଖାଇଲେ ଭଣ ଭଣ ହୋଇ ଖାଦ୍ୟରେ ବସିପଡ଼ୁଛନ୍ତି । ଦିନସାରା ଏ ମାଛି ସତରେ ଭାଇ ହଇରାଣ କରୁଛନ୍ତି !

ଏ ମାଛିଗୁଡ଼ା ପୁଣି ଏମିତ ଯେ ଉଡ଼ୁ ଉଡ଼ୁ ନାକରେ, କାନରେ, ମୁହଁରେ ବସି ଏମାନେ ଖାଲି ବିରକ୍ତ କରୁଥିବେ । ସବୁଠୁ ବେଶି ଅଡ଼ୁଆ କରନ୍ତି ଖିଆପିଆ ସମୟରେ । ଏ ଭଣଭଣିଆ ମାଛିଙ୍କର ଭଣଭଣ ଶବ୍ଦ ରାମବାବୁଙ୍କୁ ବଡ଼ ବିରକ୍ତ ଓ ବ୍ୟସ୍ତ କରେ ।

ରାମବାବୁ କେଉଁ ବହିରୁ ପଢ଼ି ଜାଣିଥିଲେ ଯେ ଏକ ଶହରୁ ବେଶି ଜାତିର ମାଛି ଅଛନ୍ତି । ଏତେ ଜାତିର ମାଛି କାହିଁକି ସୃଷ୍ଟି ହେଲେ କେଜାଣି । ଏଗୁଡ଼ାଙ୍କୁ କ'ଣ ମଣିଷ ଶାଗ ପରିବା ପରି ତୁଣ ତରକାରି କରି ଖାଇବେ ନା ଏମାନେ ହଲ ବୁଲେଇବେ ?

ମାଛିଙ୍କ ଉପରେ ରାମବାବୁଙ୍କ ରାଗ ଦେଖି ତାଙ୍କ ସ୍ତ୍ରୀ ସୀତାଦେବୀ ହସିଲେ । ସତେ ତ ଏ ମାଛିଗୁଡ଼ା ଟିକିଏ ଆରାମରେ ବସେଇ ଉଠେଇ ଦେଉନାହାନ୍ତି । ଏଇନା ପୁଣି

ବର୍ଷା ହେମନ୍ତ ହୋଇନାହିଁ । ବର୍ଷାଦିନେ ଏ ମାଛିମାନେ ଛୁଆକରି ବଂଶ ଏତେ ବେଶି ବଢ଼େଇ ଦେବେ ଯେ ରନ୍ଧା ଡେକ୍‌ଚିରେ ପଡ଼ି ଗନ୍ଧି ହୋଇଯିବେ, ଖାଦ୍ୟପେୟରେ ପଡ଼ିଯିବେ ।

ଶୋଇବା ବଖରା କି ରୋଷେଇଶାଳରେ ମାଛିମାନେ ଏପରି ବସିଥିବେ ଯେ କଳା ଚିତା ପଡ଼ିଥିଲାପରି ଦିଶୁଥିବ ।

ଗୋଟିଏ ମାଛି ଦଶବାର ଦିନରେ ଶହ ଶହ ଛୁଆ କରିଦ । ପାଣି ଜକେଇଥିବା ଓଦା ସନ୍ତସନ୍ତିଆ ଜାଗାରେ, ଗୋବର ଖାତରେ ଓ ଗଛପତର କି ଫଳପନିଅର ପଡ଼ି ପଚୁଥିବା ଜାଗାରେ ମାଛି ଛୁଆ କରେ ବୋଲି ସିଏ ପଢ଼ିଥିଲେ ।

ସୀତାଦେବୀ ନିଜେ ପଢ଼ିଥିବା ପାଠକଥା ମନେ ପକେଇଲେ । କୂଅମୂଳ, ରୋଷେଇଘର ପାଖ ଜାଗାକୁ ହାଣି ଗଡ଼ାଣିଆ କରିଦେବାକୁ ସେ ତାଙ୍କ ସ୍ୱାମୀ ରାମବାବୁଙ୍କୁ ପରାମର୍ଶ ଦେଲେ । ତାହାହେଲେ ରୋଷେଇ ଘରଠାରୁ କୂଅମୂଳ ପର୍ଯ୍ୟନ୍ତ ପାଣିରେ ପଚର ପଚର ନ ହୋଇ ଶୁଖିଲା ରହିବ । ଗୋବରଖାତରେ ପତଳା କରି ମାଟି ଘୋଡ଼େଇ ଦେବାକୁ ହେବ ବୋଲି ସେ କହିଲେ । ତେବେ ଅନ୍ତତଃ ଆଉ ଦଶବାର ଦିନେ ମାଛିଙ୍କ ବଂଶ ସେତେ ବଢ଼ିବ ନାହିଁ । ରାମବାବୁ ସେଇଆ କଲେ ।

ଖାଇଲାବେଳେ ମାଛି ଉପରେ ରାମବାବୁଙ୍କ ରାଗ ସବୁଠାରୁ ବେଶି ବଢ଼ିଯାଏ । ତାଙ୍କର ସାନ ପୁଅ ଏହାର କାରଣ କଣ ବୋଲି ପଚାରିବାରୁ ସେ କହିଲେ ଯେ ମାଛି ଯାବତୀୟ ମଇଳା ଉପରେ ବସିକି ଆମ ଖାଇବାରେ ବସେ । ଝାଡ଼ା,



ମାଛି



ମାଛିର ମୁଣ୍ଡ



ମାଛିର ଗୋଡ଼

ଛେପ, ଖଙ୍କାର, ସିଙ୍ଘାଣି, ପୂଯ, ଅଳଆ, ଗୋବର, ପଚା ଜିନିଷ ସବୁଥିରେ ବସିଥାଏ । ସେଠୁ ସିଧା ଉଡ଼ିଆସି ଆମ ଦେହ, ମୁହଁ ଓ ଖାଦ୍ୟରେ ବସିଯାଏ । ମାଛି ଗୋଡ଼ ପୁଣି ଏମିତି ଯେ ଘୁଅ, ଗୋବର, ମଇଳା ଉପରେ ଯେତେବେଳେ ବସେ, ଯାବତୀୟ ମଇଳା ତା' ଗୋଡ଼ରେ ଲାଗିଯାଏ ।

"ଇସ୍, ମାଛି ତାହାହେଲେ ଆମ ଖାଇବା ଜନିଷରେ ଝାଡ଼ା, ବାନ୍ତି, ଛେପ, ଖଙ୍କାର ସବୁକିଛି ମିଶେଇ ଦଉଛି !"— ଏକଥା ରାମବାବୁଙ୍କ ସାନପୁଅ କହିଲା । ମାଛି ପୁଣି ନାନା ରୋଗ ବୋହି ଆଣିଥାଏ ବୋଲି ରାମବାବୁ କହିଲେ । ମାଛି ପାଇଁ ହଇଜା, ନାଲିଝାଡ଼ା, ଟାଇଫଏଡ୍, ନାନା କୃମି, ଏପରିକି ଯକ୍ଷ୍ମା ଓ ପୋଲିଓ ରୋଗ ବି ହୋଇଥାଏ ।

ପୋଲିଓ କି ରୋଗ ବୋଲି ପିଲାଏ ଜାଣିନଥିବାରୁ ରାମବାବୁ କହିଲେ ଯେ ଏହି ରୋଗ ପିଲାଦିନେ ହୁଏ । ଏହି ରୋଗ ହେଲେ କ'ଣ ସବୁ ଅସୁବିଧା ହୁଏ ବୋଲି ପିଲାମାନେ ପଚାରିଲେ ।

ପିଲାମାନଙ୍କ କଥା ଶୁଣି ରାମବାବୁ କହିଲେ ଏହି ପୋଲିଓ ରୋଗ ପିଲାଦିନେ ହୁଏ । ଏଥିରେ ପିଲାର ହାତଗୋଡ଼ ସରୁ ହୋଇଯାଏ ଓ ରୋଗ ହୋଇଥିବା ବ୍ୟକ୍ତି ସାରା ଜୀବନ ଚେଙ୍ଗା କି ଛୋଟା ହୋଇଯାଏ । ପୋଲିଓ ମଣିଷକୁ ପଙ୍ଗୁ କରିଦିଏ । ତାହା ପୁଣି ମାଛି ଯୋଗୁ ହୋଇପାରେ ଶୁଣି ପିଲାଏ ଡରିଗଲେ ।

ଏଇ ପୋଲିଓ ପାଇଁ ଟିକା ବାହାରିଛି । ଏହି ଟିକା ନେଲେ ପୋଲିଓ ହୁଏ ନାହିଁ । ତାଙ୍କୁ ସବୁ ପୋଲିଓ ଟିକା ଦିଆଯାଇଛି ବୋଲି ବାପାଙ୍କଠୁ ଶୁଣି ପିଲାଏ ଆଶ୍ୱାସନା ପାଇଲେ ।

ଏହାପରେ ପିଲାଏ ପୁଣି ମାଛି କଥାକୁ ଫେରି ଆସିଲେ । ମାଛି ଏତେ ରୋଗର କାରଣ ବୋଲି ସେମାନେ ଜାଣି ନଥିଲେ । ଏକଥା ଶୁଣିଲା ପରେ ଘରେ, ବାହାରେ, ଖାଦ୍ୟ-ପଦାର୍ଥରେ ମାଛି ଯେପରି ନ ବସନ୍ତି ପିଲାଏ ଜଗି ରହିଲେ । ମାଛି ବସା ଖାଦ୍ୟ ଖାଇବା ଯାହା ଝାଡ଼ା, ମଇଳା, ବାନ୍ତି, ସିଙ୍ଘାଣି ଖାଇବା ସେଇଆ ।

ଠାକୁରଙ୍କ ଭୋଗରେ ବି ଢ ମାଛି ବସନ୍ତି । ତେବେ ଠାକୁର କଣ ମାଛିବସା ଖାଦ୍ୟ ଗ୍ରହଣ କରନ୍ତି ?

ସତରେ ଅଜ୍ଞାନତା ଯୋଗୁଁ ମଣିଷ କି ହରବର ନ ହୁଏ ? ମଣିଷ ଏ ସାମାନ୍ୟ ସାମାନ୍ୟ କଥାକୁ ଯଦି ନଜର ଦେବ ତେବେ କେତେ ପ୍ରକାର ରୋଗରୁ ରକ୍ଷା ପାଇଯିବ ।

—୦—

# ମାଇଚ୍‌ ଓ କାନ୍ଥୁ

ବାପୁ ଭାରି ଚଞ୍ଚଳ ଓ ଖେଳୁଆଡ଼ ପିଲା । ମାତ୍ର ଏଥର ଖରାଦିନଟା ସାରା ବଚରା ଚଲାବୁଲା କରି ନପାରି ହଇରାଣ ହୋଇଗଲା । ଦେହସାରା ତାର କାନ୍ଥୁରେ ଭରପୂର୍ ହୋଇ ବସିଲା ଜାଗାରୁ ଉଠେଇ ଦେଲା ନାହିଁ । ବାପୁର ସାନଭାଇ ପୁପୁଟା ଭାରି ଚଗଲା । ମିଛ କହିଲେ କାନ୍ଥୁ ଉଠେ ବୋଲି ତାର ଧାରଣା । ସେଥିପାଇଁ ବଡ଼ ଭାଇକୁ ମିଛୁଆ କହି ଚଡ଼େଇବା ଆରମ୍ଭ କଲା ।

କାନ୍ଥୁର କଷ୍ଟ ପାଇଁ ବାପୁର ଦେହଟା ଅସ୍‌କତିଆ ଲାଗୁଥିଲା । ସେଥିରେ ପୁପୁ ଚଡ଼େଇବାରୁ ବଚରା ବାପୁ ରାଗିଯାଏ ସିନା କିଛି କହିନପାରି କାନ୍ଦେ ।

ବୋଉ ବାପୁକୁ ବୁଝେଇବାଲାଗି ସାନ ପିଲାଙ୍କର କେତେ କାନ୍ଥୁ ଉଠେ ବୋଲି କହିଲେ । ଆଉ ପୁପୁକୁ ଆକଟିଲେ । ଯିଏ ଯାହାକୁ ଚଡ଼ାଏ ତାର ବି ସେଇଆ ହୁଏ ବୋଲି ବୋଉ କହିଲେ ।

ବୋଉଙ୍କ କଥା ଶୁଣି ପୁପୁ ଡରିଗଲା । ଭଲକରି ତା ହାତ ଗୋଡ଼ ପରଖିଗଲା—ସତରେ ଆଉ କାଛୁ ଉଠନାହିଁ ତ ?

ଖରାଦିନେ ଗଡ଼ିଆ ପୋଖରୀରୁ ପାଣି ଶୁଖିଯାଏ । ନଈ ନାଳ ବି ପ୍ରାୟ ଶୂନ୍ୟ ହୋଇଯାଏ । ଆଉ ତଳେ ଯେଉଁ ପାଣି ଟିକକ ରହେ ସେଥିରେ ବହୁତ ମଇଳା ବସିଥାଏ । ସେମିତିକା ମଇଳା ପାଣିରେ ଗାଧୋଇଲେ କାଛୁ ଉଠେ ବୋଲି ସାଧାରଣ ଲୋକଙ୍କର ଧାରଣା । ହେଲେ କାଛୁର ଅସଲ କାରଣଟା ସହଜରେ କେହି ଧରି ପାରିବା ସହଜ ହେଉ ନଥିଲା ।

ବାପୁକୁ ପୁପୁ ଡରୁଥାଏ ସିନା, ହେଲେ ରାମଚନ୍ଦ୍ରଙ୍କୁ ଭରତ ଭଲ ପାଇଲା ପରି ପୁପୁ ତାର ବଡ଼ ଭାଇକୁ ବହୁତ ଭଲ ପାଏ । ପୁପୁ ନିଜ ପଢ଼ା ବହି ଛଡ଼ା ନାନା ବାହାର ବହି ସଦାବେଳେ ପଢ଼ିବାକୁ ଭଲ ପାଏ ।

ଦିନେ ରୋଗମାନଙ୍କ ଉପରେ ବହିଟିଏ ପଢ଼ୁ ପଢ଼ୁ ହଠାତ୍ ଗୋଟିଏ ଛବି ତଳେ "କାଛୁ ଜୀବାଣୁ" ଲେଖା ହୋଇଥିବାର ସେ ଦେଖିପକେଇଲା । ଠିକ୍ ପରିକା ଗୋଟିଏ ଜୀବର ଛବି । ଅତି ସାନ ଚମ ଉକୁଣି ପରିକା ଏ ଜୀବ । ଆଁ'କୁ ମାଇଟ୍ କୁହାଯାଏ ।

ମାଇଟ୍‌ର ଆଠଟା ଗୋଡ଼ । ଇଏ ଭାରି ଛୋଟ ପ୍ରାଣୀଟିଏ । ଏତେ ଛୋଟ ଯେ ଖାଲି ଆଖିକୁ ମୋଟେ ଦିଶେ ନାହିଁ । ବହିରେ ଯେଉଁ ଚିତ୍ର ଦିଆଯାଇଥିଲା ତାହା କାଳେ ପ୍ରକୃତ ମାଇଟ୍‌ର ଦେଢ଼ଶହ ଗୁଣ ବୋଲି ଲେଖା ଯାଇଥିବାର ଦେଖି ପୁପୁ ଭାରି ଆଶ୍ଚର୍ଯ୍ୟ ହୋଇଥିଲା । ଏଇ ମାଇଟ୍‌ଙ୍କ ଭିତରେ ପୁଣି ମାଈ ଓ ଅଣ୍ଡିରା ଅଛନ୍ତି । ମାଈ ମାଇଟ୍ ଅଣ୍ଡିରା ମାଇଟ୍‌ର ଦେଢ଼ଗୁଣ ବଡ଼ ହେବ ।

ମାଇଟ୍ ବୋଲି ଏହି ଜୀବ କଥା ତାଙ୍କ ଘରେ ଆଗରୁ କେହି ଜାଣି ନଥିଲେ । ହେଲେ ପୁପୁ ସହଜେ ଛାଡ଼ିବାବାଲା ନୁହେଁ । ବହୁତ ପ୍ରକାର ବହି ଖୋଜିଲା ପରେ—ବର୍ଷାଦିନେ ବାଡ଼ି ବଗିଚାରେ ବାହାରୁଥିବା ନାଲି ଟୁକ୍‌ଟୁକ୍ ସାଧବବୋହୂ ପୋକ ମଧ୍ୟ ଏଇ ମାଇଟ୍ ଜାତିର ବୋଲି ସିଏ ଜାଣିଲା । ଟିକି ଟିକି ନାଲି ଗୁଲୁ ଗୁଲୁ ସାଧବ ବୋହୂର ଦେହ କି ନରମ । ଠିକ୍ ନାଲି ଭେଲ୍‌ଭେଟ୍ କନାପରି । ପିଲାଦିନେ ସମସ୍ତେ ଏହି ପୋକକୁ ଧରିବାକୁ ଭାରି ସୁଖ ପାଆନ୍ତି । ଏଇ ସାଧବବୋହୂ ପୋକ ବା କାଛୁ ଜୀବାଣୁ ପରି ଏକ ମାଇଟ୍ । ମାଇଟ୍ ଓ ଟିକ୍ଙ୍କ ଜାଣି ଏକାଭଳିକମର ଜୀବ ଅଟନ୍ତି ।

କାଛୁ କରୁଥିବା ଜୀବାଣୁ ମାଇଟ୍ ଏବଂ ସାଧବବୋହୂ ପୋକ ଏକା ଜାତିର ଜାଣିଲା ପରେ ସମସ୍ତଙ୍କ ମନରେ ଏହା

ନେଇ ଏକ ମୋଟାମୋଟି ଧାରଣା ଆସିଗଲା । ତେବେ ଅତ ଷ୍ଟୋଟ ସାଧବ ବୋହୁ ପୋକଟିଏ ଧର ପଚଶ କ ତରଣ୍ ଟୁକୁର୍ କରଦେଲେ, ଗୋଟିଏ ଟୁକୁର୍ ସାଙ୍ଗରେ କାଛୁ ମାଇଟ୍‌ର ଆକାର ସମାନ ହୋଇପାରେ ।

ମାଇଟ୍‌ମାନେ ମଇଲା ଅପରଷ୍କାର ଜାଗାରେ ରହନ୍ତ । ଆମେ ମଇଲା ହେଲେ କ ମଇଲା ଅପରଷ୍କାର ଜାଗାରେ ଚଲପ୍ରଚଳ କଲେ ଉକୁଣି ପର ମାଇଟ୍ ମଧ୍ୟ ଆମ ଦେହକୁ



ଆଙ୍ଗୁଠି ସନ୍ଧିରେ ରହିଥିବା ମାଇଟ୍ ପରିବାର

ଚଢ଼ି ଆସେ । ଉକୁଣି ବାଳ ମୂଳରେ ଯାଇ ରହଲାପର, ଦେହ ଉପରେ ବୁଲ ବୁଲ ଏହ ମାଇଟ୍ ଆଙ୍ଗୁଠି ସନ୍ଧି, ପେଟରେ

ଥିବା ନାହିମୁଣ୍ଡା, କାଖ, ଜଙ୍ଘ ସନ୍ଧି ବା ଦେହରେ କୌଣସି ଭାଙ୍ଗ ପଡ଼ିଥିବା ଜାଗାରେ ରହେ ।

ମାଇଟ୍‌ର ଘର ହେଉଛି ଚମ ତଳ । ଚମକୁ ଫୁଟେଇ ଚମ ତଳେ ଗୋଟିଏ ସୁଡ଼ଙ୍ଗ ତିଆରି କରି ମାଇଟ୍ ରହନ୍ତି । ମାଈ ମାଇଟ୍ ଅଣ୍ଡା ଦେବା ପାଇଁ ସୁଡ଼ଙ୍ଗ ମୁହଁକୁ ଆସି ଚମକୁ କାମୁଡ଼େ । ସେଠି କାଛୁ ଆମକୁ କୁଣ୍ଡେଇ ଲାଗେ । ଆମେ ବ୍ୟସ୍ତ ହୋଇ କୁଣ୍ଡାଉ । ଏମିତି କୁଣ୍ଡେଇ ହେଲାବେଳେ ମାଇଟ୍ ଅଣ୍ଡା ନଖରେ ଲାଗି ଦେହର ଅନ୍ୟ ଜାଗାକୁ ଯାଏ । କାଛୁରୁ ବାହାରୁଥିବା ନସା, ପାଣି, ପୂଯ ଲାଗିକି ମଧ୍ୟ କାଛୁ ଜୀବାଣୁ ଅନ୍ୟ ସ୍ଥାନକୁ ଚାଲିଯାଏ । ସେଠି କାଛୁ କରାଏ ଓ ଆମେ କହୁ କାଛୁ ଡେଇଁଲା ।

ଏମିତିକା ଗୋଟିଏ ଛୋଟିଆ ଜୀବ ମାଇଟ୍ । ସେ ପୁଣି କାଛୁର କାରଣ । ତେଣୁ ଏ ଛୋଟିଆ ଜୀବକୁ ଖାଲି ଆଖିରେ ଯେତେ ଖୋଜିଲେ ବି ମିଳିବ କୁଆଡୁ ? ଏତେ ସାନ ଯେ ଖାଲି ଆଖିକୁ ବି ଦିଶିବ ନାହିଁ । ଅଣୁବୀକ୍ଷଣ ଯନ୍ତ୍ରଟିଏ ଧରି ତା ତଳେ ଚାହିଁଲେ ଏ ମାଇଟ୍ ଦିଶିବ । କେବେ ଡାକ୍ତରଖାନା ଯାଇ ସେଠାରେ ଅଣୁବୀକ୍ଷଣ ଯନ୍ତ୍ରଟି ଧରି ତହିଁରେ କାଛୁ ଜୀବାଣୁକୁ ପରୀକ୍ଷା କଲେ ସବୁ ଦେଖିପାରିବା ବୋଲି ପୁପୁ କହିଲା ।

ମାଇଟ୍‌ର ଆଖି ନାହିଁ । ପାଟିରେ କରତଭଳି ଦୁଇଟା ଦାନ୍ତ ଭଳି ଅଛି ଯେ, ସେଥିରେ ସେ ଚମକୁ କାଟିପକାଏ ।

ତା’ ଗୋଡ଼ରେ ପୁଣି ଗୁଣ ଛଅଟା ଶୋଷକ ଅଛି । ସେହି ଶୋଷକ ସାହାଯ୍ୟରେ ଚମକୁ ଶୋଷିନେଇ ସେ ଚମକୁ ଜାବୁଡ଼ି ଧରେ ।

ତେଣୁ ଦେହକୁ ଥରେ ଆସିଲେ ଏଇ ମାଇଟ୍ ସହଜରେ ଯାଏ ନାହିଁ । ଗରମ ପାଣିରେ ପିତାତରଡ଼ା ଜାଲ ସାହାଯ୍ୟରେ ରଗଡ଼ି ଦେହକୁ ଘଷିଲେ ଚମରୁ ମାଇଟ୍‌କୁ ବାହାର କରିହେବ । ଏମାନେ ବିଛଣା ଓ ଲୁଗାପଟାକୁ ମଧ୍ୟ ଜାବୁଡ଼ି ଧରନ୍ତି ।

କାଛୁକଥା ଏତେ ଲେଖାହୋଇଛି ଦେଖି ବାପୁର ଆଗ୍ରହ ଢେର ବଢ଼ିଗଲା । ସେ ପୁପୁଠାରୁ ବହିପତ୍ର ନେଇ ଆଉ ଅଧିକା ଜ୍ଞାନ ଖୋଜି ବସିଲା । ଯାହାକୁ କାଛୁ ହୋଇଥିବ, ତା’ର ବିଛଣା ଓ ଲୁଗାପଟା ଯିଏ ବ୍ୟବହାର କରିବ, ତାକୁ ବି କାଛୁ ହେବ । କାଛୁ ହୋଇଥିଲେ ପ୍ରତିଦିନ ନିଜ ଲୁଗାପଟା ଓ ପାଣିଶୁଆ ବିଛଣା ଓ ଚଦରିକୁ ଅଧଘଣ୍ଟାଏ ପର୍ଯ୍ୟନ୍ତ ଫୁଟନ୍ତା ପାଣିରେ ସିଝାଇବ ।

ଯାହାକୁ କାଛୁ ହୋଇଥିବ, ତାକୁ ଭଲକରି ରଗଡ଼ି-ଦେଇ ନିମପତ୍ର ସିଝା ପାଣିରେ ଗାଧୋଇଦେବ । ତା’ହେଲେ ଚମତଳେ ତିଆରି କରିଥିବା ସୁଡ଼ଙ୍ଗ ଛିଡ଼ିଯିବ ଓ ଦେହରୁ ମାଇଟ୍ ବାହାରିଯିବ । ଏସବୁ କଥା ଜାଣିଲାପରେ କାଛୁ ଆଉ ଅସାଧ୍ୟ ହୋଇ ରହିବ ନାହିଁ ।

କାଛୁ ହୋଇଛି ବୋଲି ବାପୁ ମୋଟେ ଗାଧୋଉନଥିଲା। କେଉଁ ଦିନ ଗାଧୋଇଲେ ବି କଷ୍ଟ ହେବ ବୋଲି କାଛୁ ଦେହରେ ଟିପ ବି ମରେଇ ଦେଉ ନଥିଲା। ଲୁଗାପଟା ବିଛଣା ତା'ର ବଦଳାଯାଉ ନଥିଲା। ପୁପୁ ଚିଡ଼ଉ ପଛେ, ବହିରୁ ଏତେ କଥା ପଢ଼ି ଶୁଣେଇଲା ପରେ ବାପୁର ମନ ଖୁସି ହୋଇଗଲା। ସେ ଖୁସି ହୋଇ ସାନଭାଇ ପୁପୁର ପିଠି ଥାପୁଡ଼େଇଦେଲା। କହିଲା, "ହଉ ଏ କାଛୁକୁ ଏଥର ମୁଁ ସାଧ୍ୟ କରୁଛି।"

ଦି'ଭାଇ ଏଇ ଖୁସିରେ ପରସ୍ପରକୁ ଗେଲକଲେ।

———

# ବ୍ୟାକ୍‌ଟେରିଆ ଓ ରୋଗ

ବାପୁ ଓ ପୁପୁ ବହୁତ ଜ୍ଞାନବିଜ୍ଞାନ ସମ୍ବନ୍ଧିତ ବହି ପଢ଼ନ୍ତି । ଦୁନିଆର ନାନା କଥା ଜାଣିବାକୁ ସେମାନଙ୍କର ଆଗ୍ରହ । ପୃଥିବୀରେ ପ୍ରାଣୀଜଗତ ସାଙ୍ଗକୁ ଉଦ୍ଭିଦ ଜଗତ ଯେ ସାଙ୍ଗ ପଣକା ସମାନ ସମାନ ରହିଛି ସେନେଇ ବି ପିଲାଙ୍କର ଜ୍ଞାନ ହେବା ନିତାନ୍ତ ଦରକାର ।




ସେଦିନ ଖାଇବା ସମୟରେ ଛତୁ ତରକାରି ହୋଇଥିଲା । ଏ ଛତୁ ପୁଣି ଉଦ୍ଭିଦ କି ନୁହେଁ ? ପ୍ରାଣୀ ତ

ନୁହେଁ । ହେଲେ କି ଭଳି ଉଦ୍ଭିଦ ଇଏ ? ଶାଗୁଆ ରଙ୍ଗର ନୁହେଁ । ପୁଣି ଡାଳ, ପତ୍ର, ଫୁଲ କି ଫଳ ଏହାର ନାହିଁ । ଦୁଇଭାଇ ଆଶ୍ଚର୍ଯ୍ୟ ହୋଇ ପୁଣି ବହିପତ୍ର ଖୋଜିବସିଲେ ।

ବାପାଙ୍କୁ କହି ଲାଇବ୍ରେରିରୁ ବଡ଼ ବଡ଼ ବହି ଆଣି ଖୋଜିବାପାଇଁ ସେମାନେ ଆଗ୍ରହ ବଢ଼ାଇଲେ । ପିଲା ଦୁହିଁଙ୍କର ଏତେ କଥା ଜାଣିବା ପାଇଁ ଆଗ୍ରହ ଦେଖି ବାପା ବହି ଆଣିଦେଲେ । ତାକୁ ପଢ଼ି ଜାଣିଲେ ଯେ ଛତୁ ଓ ଫିମ୍ପି ଏକା ଜାତର ଉଦ୍ଭିଦ । ଏମାନଙ୍କ ଦେହରେ ସବୁଜକଣିକା ନଥିବାରୁ ଏମାନେ ନିଜ ଖାଦ୍ୟ ନିଜେ ତିଆରି କରି ପାରନ୍ତି ନାହିଁ । କଖାରୁ କାଟି ରଖିଲେ, ପାଉଁରୋଟି ଦୁଇତିନିଦିନ ରହିଗଲେ ସେଥିରେ ହେଇଯାଉଥିବା ଧଳା ଧଳା, କଳା ରଙ୍ଗର ଫିମ୍ପି ସବୁ ଏଇ ଛତୁ ଜାତର ।

ପଲ୍ଲୀଏ ଦେଖିଛନ୍ତି, ବର୍ଷାଦିନେ ଲୁଗା ଓଦା ହୋଇ ନ ଶୁଖି ରହିଗଲେ ସେଥିରେ କଳାଛିତ ମାରିଯାଏ । ଖାଦ୍ୟ ପଦାର୍ଥ ଅଘୋଡ଼ା ରହିଗଲେ ଗନ୍ଧେଇଯିବା ସହିତ ଫିମ୍ପି ମଧ୍ୟ ହୋଇଯାଏ ।

ପଥୁ ପଢ଼ି ଶୁଣେଇଲା—ଫିମ୍ପି ପୁଣି କେତେ ଜାତର । ଏଥିରୁ କେତେକ ବିଷ ଓ ଅଳ୍ପ କେତେକ ଉପକାରୀ ।

ଏକ ପ୍ରକାର ଫିମ୍ପିରୁ ଆଲେକ୍‌ଜାଣ୍ଡାର ଫ୍ଲେମିଂ ପେନ୍‌ସିଲିନ୍ ଔଷଧ ତିଆରି କରି କେତେ ଉପକାର ନ କରିଛନ୍ତି !

ଘା' ଯେତେ ବିଷାଣ ହେଲେ ବି ପେନ୍‌ସିଲିନ୍ ମଲମ ଲଗେଇଦେଲେ କେମିତି ଚଞ୍ଚଳ ଶୁଖିଯାଏ । ଏମିତି ଦାମିକା ଗୁଣ ଯୋଉ ଫିମ୍ପିର ସିଏ ଫେର ଖାଇବା ଦ୍ରବ୍ୟ ଓ ଲୁଗା-ପଟାକୁ ବି ନଷ୍ଟ କରିଦିଏ ।

ଏ ଫିମ୍ପି ବହୁତ ଜାତିର । କୋଉଥିରୁ ଔଷଧ ତିଆରି ହେଲଣି ତ କୋଉଥିରୁ ଖାଦ୍ୟ ତିଆରି ହେଲଣି । ପୁଣି କିଏ ରୋଗ କଲଣି ତ ଆଉ କିଏ ଲୁଗାପଟା ନଷ୍ଟ କଲ୍‌ଣି ।

ବାପୁର ମନେଅଛି କେମିତି ତାଙ୍କର ପଡ଼ିଶାଘର ଲୋକେ ସେଦିନ କେଉଁଠୁ ଛତୁ ତୋଳି ଆଣି ଖାଇ ଝାଡ଼ା ବାନ୍ତିରେ ପଡ଼ିଥିଲେ । ଛତୁରେ ପୁଣି ତେଣୁ ବିଷ ଅଛି !

ଯକ୍ଷ୍ମା, ଟାଇଫଏଡ୍, ହଇଜା, ନାଲିରକ୍ତ ଝାଡ଼ା, ଯାଦୁ, ବିଛା ଯାଏ କେତେ ରୋଗ ଏଇ ଫିମ୍ପି ଓ ସେଇ ଜାତିର ଉଦ୍ଭିଦ ପାଇଁ ହୁଏ । ଟାଏଫଏଡ୍ କି ହଇଜା ଭଳି ରୋଗ କରୁଥିବା ଫିମ୍ପିକୁ ବାକ୍‌ଟେରିଆ କହନ୍ତି । ନିମୋନିଆ କି ଧନୁଷ୍ଟଙ୍କାର ରୋଗ ବି ଏଇ ବାକ୍‌ଟେରିଆଙ୍କ ପାଇଁ ହୁଏ ।

ଆରେ ବାବା ନିମୋନିଆ ଜ୍ୱର ହୋଇ ପରା ବାପୁ ସାଙ୍ଗ ଯଦୁର କେକେବାପା ଓ ତାଙ୍କ ଘରେ ସାହାଯ୍ୟକାରୀ ଚେମାର

ବଡ଼ଭାଇ ପରା ଗଲାବର୍ଷ ମରିଗଲେ । ଯେମିତ ଧନୁଷ୍ଟଙ୍କାର ହୋଇ ବ ଡା' ପଡ଼ିଶାଘରୁ କେହି ଜଣେ ମରିଥିବାର ମା' ତାଙ୍କର ବନ୍ଧୁଥିଲେ ।



ବିଭିନ୍ନ ଜୀବାଣୁ

ରୋଗ କରୁଥିବା ବାକ୍‌ଟେରିଆ କ ଏମାନଙ୍କୁ ଖା ଆଖିରେ ଦେଖିହେବ ନାହିଁ । ଏହାକୁ ଦେଖିବାପାଇଁ ଅ ସୂକ୍ଷ୍ମ ଯନ୍ତ୍ର ମାଇକ୍ରୋସ୍କୋପ ନିଶ୍ଚୟ ଦରକାର ।

ଛତୁ, ଫିମ୍ପି, ବାକ୍ଟେରିଆ ସବୁ ଏକା ଜାତିର । ସେମାନେ ସନ୍ତସନ୍ତିଆ ଓଦାଳିଆ ଜାଗାରେ ଭଲ ବଢ଼ନ୍ତି । ତାତି ଟାଣଖରା ଓ ଶୁଖିଲା ପାଗରେ ସେମାନେ ମରିଯାଆନ୍ତି । ଗଛର ବକଲା, ମଲା କାଠରେ ଛତୁ ଫୁଟିଲାପରି ଆମର ରୋଗଣା ଓ ଓଦାଳିଆ ଚମରେ ଫିମ୍ପି ବସିଯାଏ । ସେଥିପାଇଁ ଯାଦୁ, ବାଉଁଶ ଓ ବୟସ ଛଉ ହୋଇଥାଏ । ସେଇଥିପାଇଁ ସବୁଦିନେ ନିଜ ଦେହର ଚମର ଯତ୍ନ ନେବା ଦରକାର । ଝାଳ ବୋହି ଓଦା ରହୁଥିବା ଜାଗାରେ ଏମିତିକା ଚମରୋଗ ହୋଇଥାଏ ।

ମୂଲିଆ ମଜୁରିଆ ଲୋକ ଓଦାରେ, ଓଦା ଲୁଗା ପିନ୍ଧି ବହୁତ ସମୟରେ କାମଦାମ କରୁଥିବାରୁ ତାଙ୍କ ଅଣ୍ଟାରେ ଯାଦୁ ହୋଇଥାଏ ।

ପୁଣି ପିଲାଏ ପଢ଼ି ଜାଣିଲେ ଯେ ଏକ ପ୍ରକାର ଫିମ୍ପି ଯୋଗୁଁ ନଖ ରୋଗ, ନଖ ମୋଟା ହୋଇ ଅସୁନ୍ଦର ଦିଶିବା, ନଖ ଖସିବା ଆଦି ନାନା ଜାତିର ନଖ ରୋଗ ହୋଇଥାଏ ।

ହେଲେ ହଇଜା, ନିମୋନିଆ ବାକ୍ଟେରିଆ ଚମରେ ନୀ ଦେହରେ ପଶନ୍ତି ନାହିଁ । ସେମାନେ ପାଣି ପବନରୁ ଦେହକୁ ଆସନ୍ତି । ଯଦି ଦେହରେ କୌଣସି ଜାଗା ଖଣ୍ଡିଆ ହୋଇ ରକ୍ତ ବାହାରୁଥିବ ତାହାକୁ ପରିଷ୍କାର କରି ସାବଧାନରେ ଔଷଧ ଦେଇ ରଖିବା ଦରକାର । ଯଦି ଖଣ୍ଡିଆରେ ଧୂଳି

ଲାଗେ ଓ ସେହି ଧୂଳିରେ ଧନୁଷ୍ଟଙ୍କାର ବାକ୍‌ଟେରିଆ ଥାଏ, ତେବେ ମଣିଷକୁ ଧନୁଷ୍ଟଙ୍କାର ରୋଗ ହୁଏ ।

ଏହି ଧନୁଷ୍ଟଙ୍କାର ରୋଗ ଏଡ଼େ ମାରାତ୍ମକ ଯେ ଏହା ହେଉଥିବା ଲୋକଙ୍କ ମଧ୍ୟରୁ ଶତକଡ଼ା ନବେ ଭାଗ ଲୋକ ମରିଯାଆନ୍ତି । ଠିକ୍ ସମୟରେ ଏହି ରୋଗର ଔଷଧ ବ୍ୟବସ୍ଥା ନ କଲେ ଜୀବନ ଚାଲିଯିବ ।

ଏତେ କଥା ପଢ଼ି ପଲାଏ ଭାବଲେ ସତରେ ଏ ସୃଷ୍ଟି କେଡ଼େ ବିଚିତ୍ର !

– o –

# ଫାର୍ସିଓଲ ଓ ଚେଲକ କଲଜା

ସେଦିନ ରବିବାର ହୋଇଥାଏ । ଅଫିସ ଛୁଟି । ପିଲାଙ୍କର ସ୍କୁଲ ବି ଛୁଟି । ରାମବାବୁ ବଜାରରୁ ମାଂସ, ପରିବା ପ୍ରଭୃତି ଆଣିବାକୁ ବ୍ୟାଗ୍ ଖଣ୍ଡିଏ ଧରି ସକାଳୁ ବାହାରିଗଲେ । ରବିବାରରେ ଆରାମରେ ବସି ପିଲାମାନଙ୍କ ସହ ଖିଆପିଆ କରିବେ । ଅନ୍ୟ କେଉଁଦିନ ଏକାଠି ବସି ଆରାମରେ ଗପକରି ତ ଖାଇହେଉ ନାହିଁ ।

ବଜାରରୁ ଫେରିଲାପରେ ରାମବାବୁଙ୍କ ସାନପୁଅ ସାନୁ ତାଙ୍କ ହାତରୁ ମାଂସ ଓ ପରିବା ବ୍ୟାଗ୍ ନେଇ ମା'ଙ୍କୁ ଦେଲା । ଗୋଟିଏ ଡେକ୍‌ଚିରେ ମାଂସ ବ୍ୟାଗ୍‌ରୁ ମାଂସତକ ଅଜାଡ଼ି ଦେଲାବେଳକୁ ଦେଖିଲେ ଯେ ମାଂସ ନ ଆଣି ରାମବାବୁ ସେଦିନ ଛେଳି କଲିଜା ଆଣିଛନ୍ତି । ମାଂସ ତ ବରାବର ମିଳେ । ଛେଳି କଲିଜାଟା ଏଠି ଅମିଳମିଳ । ପ୍ରଥମରୁ ପହଞ୍ଚି ନପାରିଲେ କଲିଜାତକ ସରିଯାଏ । ସାନପୁଅ ସାନୁ ଅନେକ ଥର ବାପାଙ୍କୁ ବରାଦ ଦେଇଛି ଛେଳି କଲିଜା ଆଣିବାକୁ । ତେଣୁ କଲିଜା ଦେଖି ମା' ବହୁତ ଖୁସି ହୋଇଗଲେ ।

ମା' କଲିଜା କାଟିଲାବେଳକୁ ସେଥିରେ ସେହି କଲିଜା ରଙ୍ଗର ଅତି ପତଳା ଇଞ୍ଚେ ଦେଢ଼ଇଞ୍ଚ ଲମ୍ବର ଚଟକା ପରସ୍ତ ପର କ'ଣ ସବୁ ଲାଗିଥିବାର ଦେଖିଲେ । ରାମବାବୁଙ୍କୁ ଡାକି ଦେଖେଇଲେ ।

ରାମବାବୁଙ୍କୁ ଏସବୁ ନୂଆ ଲାଗିଲା । ସେ କେବେ ତ କାହିଁ ଏସବୁ ଦେଖିଥିବାର ଜାଣିପାରିଲେ ନାହିଁ । ଏସବୁ କେବେ ଲକ୍ଷ୍ୟ କରିନଥିଲେ ଆଗରୁ । ହେଲେ ଏ ନୂଆ ଜିନିଷ ସବୁ ଆଖିରେ ଯେତେବେଳେ ପଡ଼ିଲାଣି ତାକୁ ଆଉ ଡାକ୍ତରଙ୍କୁ ନ ପଚାରି ଖାଇହେବ ନାହିଁ । ଆଉ ତାଙ୍କ ସ୍ତ୍ରୀ ରୋଷେଇ କରିବେ କ'ଣ ବ୍ୟାଗ୍‌ଟିରେ ପୁଣି ଭରତି କରିଦେଲେ । ରାମବାବୁ ବ୍ୟାଗ୍‌ଟି ଧରି ସାନ ସହିତ ତାଙ୍କ ସାଙ୍ଗ ଡାକ୍ତରଙ୍କ ଘରକୁ ବାହାରିଲେ ।

ସକାଳୁ ସକାଳୁ ସାଙ୍ଗ ରାମବାବୁ ଓ ତାଙ୍କ ପୁଅକୁ ଦେଖି ଡାକ୍ତର ରମେଶବାବୁ ଭାରି ଖୁସି ହୋଇଗଲେ । ଆସିବାର କାରଣ ବୁଝିଲାପରେ ଗୋଟିଏ ସଫା ପାତ୍ରରେ ରାମବାବୁ ଆଣିଥିବା କଲିଜାକୁ ରଖିଲେ ଓ ଭଲକରି ପରୀକ୍ଷା କରି ଦେଖିଲେ ଯେ ସେହି କଲିଜାରେ ଫାସିଓଲା ବୋଲି ଜାତିଏ ପରଜୀବୀ ବା ପାରାସାଇଟ୍ ହୋଇଛନ୍ତି । ଯେଉଁ ଜୀବ ଅନ୍ୟ ଗୋଟିଏ ଜୀବର ଦେହରେ ରହେ ତାକୁ ପରଜୀବୀ କହନ୍ତି ।

ଫାସିଓଲା ନାଁ ଶୁଣି ରାମବାବୁ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ । ଏ ପ୍ରକାର ଜୀବ ସେ ତ କେବେ ଦେଖି ନଥିଲେ କି ଶୁଣି ନଥିଲେ । ପୂର୍ବରୁ ତ କେତେଥର ରାମବାବୁ ଘରକୁ କଲିଜା କିଣି ଆଣିଛନ୍ତି ହେଲେ ଏ ପ୍ରକାର ଜନ୍ତୁ ତ ତାଙ୍କର ଆଖିରେ କେବେ ପଡ଼ିନଥିଲା ।

ରମେଶବାବୁ ବୁଝେଇଦେଲେ ଫାସିଓଲା ବୋଲି ଜାତଏ ପରଜୀବୀ ଗାଈ, ଛେଳି, ମେଣ୍ଢା, କୁକୁର ପ୍ରଭୃତି ଜୀବଙ୍କ କଲିଜାକୁ ଆକ୍ରାନ୍ତ କରିଥାଏ । ଏହି ରୋଗକୁ 'ଲିଭର ରଟ୍' କୁହାଯାଏ । ଫଳରେ ଦେହ ଭିତରେ ଥିବା କଲିଜା ରୋଗୀ ହୋଇଯାଏ । ମଣିଷଙ୍କ ଦେହକୁ ଇଏ ଆସେ ନାହିଁ ସତ ହେଲେ କଲିଜାରେ ଏପରି ଗୁଡ଼ିଏ ଜୀବ ଥିବାର ଦେଖିଲେ କିଏ ଖାଇହେବ ? ଘୃଣା ଲାଗିବ ନାହିଁ ?

ଏ ଫାସିଓଲା ଲମ୍ବରେ ଇଞ୍ଚେ ଲମ୍ବର ପ୍ରାୟ । ଅତି ପତଳା ଓ ଦେହର ରଙ୍ଗ ଛେଳି କଲିଜାର ରଙ୍ଗ ପ୍ରାୟ ହୋଇଥାଏ । ତେଣୁ କଲିଜା ସାଙ୍ଗରେ ରହିଲେ ସହଜରେ ଜାଣି ହେବନାହିଁ ।

ଫାସିଓଲା ଛେଳି ଓ ମେଣ୍ଢାଙ୍କ ଦେହରେ ହୁଏ । ଛେଳି ମେଣ୍ଢାର ଝାଡ଼ା ସହ ଏହାର ଅଣ୍ଡା ମାଟିକୁ ଯାଏ । ସେଠି ଅଣ୍ଡାଫୁଟି ବିଭିନ୍ନ ଲାର୍ଭା ଅବସ୍ଥାରେ ପରିଣତ ହୁଏ । ଏହାର ଗୋଟିଏ ଲାର୍ଭା ଅବସ୍ଥା

ଗେଣ୍ଡା ଦେହରେ ବ ବଢ଼େ । ଗେଣ୍ଡା ଦେହରୁ ବାହାରି ପୁଣି ଅନ୍ୟ ଏକ ଲାର୍ଭା ଅବସ୍ଥାରେ ଇଏ ଘାସ ପତ୍ରରେ, ପାଣିକଲଆ ଗଛରେ ଲାଗି ରହେ । ଯେତେବେଳେ ଛେଳି, ମେଣ୍ଢା, ଗାଈ ଗୋରୁ ଘାସ ଚରନ୍ତି, ଏହି ଲାର୍ଭା ପୁଣି ତା ଦେହକୁ ଚାଲିଆସି ତା'ର କଲିଜାରେ ବସାବାନ୍ଧି ରହେ । ରମେଶବାବୁ ତାଙ୍କର ବହି ଖୋଲି ଫାସିଓଲାର ଜୀବନଚକ୍ର ଓ ସେ କେମିତି ଛେଳିଙ୍କ ଦେହକୁ ଆସେ ତା' ଦେଖେଇଲେ ।




ରାମବାବୁଙ୍କର ଏସବୁ ନେଇ ଜାଣିବାର ଆଗ୍ରହ ଦେଖି ରମେଶ କହିଲେ -ଜାତଏ ଜାତଏ ଫାସିଓଲା ସନା ମେଣ୍ଢା

ଛେଳିଙ୍କ ଦେହରେ ହେଉଛନ୍ତି, ହେଲେ ଆଉ କେତେ ପରଜୀବୀ ମଣିଷଙ୍କ ଦେହରେ ବ ହୁଅନ୍ତି । ତାକୁ ଟେପ୍‌ଓ୍ୱାର୍ମ କହନ୍ତି । ସାଧାରଣତଃ ଇଉରୋପ, ଆମେରିକା ପ୍ରଭୃତି ସଭ୍ୟ ଦେଶମାନଙ୍କରେ ଯେଉଁଠାରେ ମଣିଷମାନେ ଘୁଷୁରି, ଗାଈ ମାଂସ ଖାଆନ୍ତି ଓ ଏହି ମାଂସକୁ ଭଲକରି ସିଝେଇ ଖାଆନ୍ତି ନାହିଁ, ସେଠାରେ ଏହି ଟେପ୍ ଓ୍ୱାର୍ମ ରୋଗ ଦେଖାଯାଏ ।

ଦରଜୀ ମାପୁଥିବା ଟେପ୍‌ପରି ଏହାର ଦେହ ହୋଇଥିବାରୁ ଆ'ର ନାଁ ଏପରି ହୋଇଛି । ଏହାର ଦେହ ଚେପ୍‌ଟା, ଅତି ଲମ୍ବା । ମୁଣ୍ଡଟି ଅତି ସାନ, ଆଖିକୁ ଦିଶେ ନାହିଁ । ମୁଣ୍ଡରେ ଥିବା ଅଙ୍କୁଶ ଦ୍ୱାରା ଇଏ ମଣିଷ ପେଟରେ, ତା ଅନ୍ନନାଳୀରେ ଝୁଲିକରି ରହି ଆମେ ଖାଉଥିବା ଖାଦ୍ୟରୁ ସାରତକ ଶୋଷୁ ଥାଏ । ଆର ନାଁ "ଫିତାଆ" । ଆ' ଦେହରେ ଥିବା ଟେପ୍‌ରୁ ଖଣ୍ଡେ ଖଣ୍ଡେ ଛାଡ଼ି ମଣିଷର ଝାଡ଼ାସହ ବାହାରକୁ ଚାଲିଆସେ ।

ତମେ ତ ଜାଣିଛ ଘୁଷୁରି ପରି ଯେଉଁ ଜୀବମାନେ ଝାଡ଼ା, ମଇଳା ଖାଇ ବଞ୍ଚନ୍ତି, ତାଙ୍କ ଖାଦ୍ୟ ସହ ଏହି ଟେପ୍ ମଧ୍ୟ ତାଙ୍କ ଦେହ ଭିତରକୁ ଚାଲିଆସେ । ଘୁଷୁରି ଦେହକୁ ଆସିଲାପରେ ଅଣ୍ଡାରୁ ଛୁଆ ଫୁଟେ ଓ ଇଏ ପୁଣି ତା ଦେହର ବିଭିନ୍ନ ଅଂଶରେ, ଯଥା—ଜଭ, ମାଂସ ଓ ଚେକ ଅଞ୍ଚଳରେ ଲାଗିକରି ରହେ । ଘୁଷୁରି ଦେହରେ ଇଏ ଲାର୍ଭା ଅବସ୍ଥାରେ

ଥାଏ ଓ ଯେତେବେଳେ ମଣିଷ ଘୁଷୁର ମାଂସକୁ କଞ୍ଚା ବା ଭଲକରି ନ ସିଝେଇ ଖାଏ ସେତେବେଳେ ମଣିଷ ଦେହକୁ ଇଏ ଚାଲିଆସେ । ମଣିଷ ଦେହକୁ ଆସିଲା ପରେ ଇଏ ତା'



ଟିନିଆ

ନିଜ ରୂପ ଧାରଣ କରେ ଓ ନିଜର ଗନ୍ତବ୍ୟ ସ୍ଥାନରେ ପହଞ୍ଚି ପୁଣି ଝୁଲି ରହେ ।

ଥରେ ଏହି ଜିନଆ ମଣିଷ ଦେହକୁ ଚାଲି ଆସଲେ, ମଣିଷ ଦେହରୁ ଯିବା ବଡ଼ କଷ୍ଟ । ଏହି ରୋଗକୁ ସଂଷ୍ଟ ସର୍କଣ ରୋଗ କହନ୍ତି ।

ମଣିଷ ଯାହା ଖାଇବ ଇଏ ସେଥିରେ ଭାଗ ବସିବ । ତେଣୁ ମଣିଷ ଦୁର୍ବଲ ହେବାକୁ ବାଧ ହେବ ।

ଏତେ କଥା ଶୁଣିଲା ପରେ ରାମବାବୁ ଦୀର୍ଘ ନିଃଶ୍ୱାସ-ଟିଏ ପକେଇଲେ । ରମେଶବାବୁଙ୍କୁ ଅତି ଖୁସିରେ ଧନ୍ୟବାଦ ଦେଇ କଲଜାତକ ହାତରେ ଧରି ସାନ ସହ ଘରକୁ ଫେରିଲେ ।

———

# ଜାତଜାତିକା କମି ଓ ରୋଗ

ରାମବାବୁ ଓ ମୋହନବାବୁ ରବିବାରଦିନ ବଜାରରୁ ସଉଦାପତ୍ର ଆଣିସାରି ଡ଼ାକ୍ତରବନ୍ଧୁ ରମେଶବାବୁଙ୍କ ଘରକୁ ଯିବାକୁ ଯୋଜନା କଲେ ।

ଡ଼ାକ୍ତର ରମେଶବାବୁ ନାନା କଥା ଜାଣନ୍ତି । ବିଦେଶରେ ରହି ଡ଼ାକ୍ତରୀବିଦ୍ୟାରେ ନାନା ଗବେଷଣା କରି କେତେ ଉପାଧି ଓ ଡ଼ିଗ୍ରୀ ହାସଲ କରିସାରି ନିଜ ଦେଶକୁ ଫେରିଛନ୍ତି । ବିଭିନ୍ନ ଜାତିର କୃମିଙ୍କ ଚିତ୍ର ଦେଖାଇ ସେଗୁଡ଼ିକ ଯୋଗୁଁ ମଣିଷ ଦେହରେ ହେଉଥିବା ରୋଗ ନେଇ ସେ ବୁଝେଇ ଦେବେ ବୋଲି କହିଥିଲେ ।

**ଗୋଦର :**

ସକାଳୁ ସକାଳୁ ଡ଼ାକ୍ତର ରମେଶବାବୁ ତାଙ୍କର ପ୍ରିୟ ବନ୍ଧୁ ଦୁହିଁଙ୍କୁ ଦେଖି ବଡ଼ ଖୁସି ହୋଇଗଲେ । ତାଙ୍କ ବୈଠକଖାନାକୁ ସେତେବେଳେ ଜଣେ ଗୋଦର ରୋଗୀ ଆସିଥିଲେ । ଗୋଦର ରୋଗକୁ ବାତଜର ବୋଲି ମଧ୍ୟ କହନ୍ତି । ରୋଗୀଙ୍କର ଗୋଡ଼ ଦୁଇଟି ହାତୀ ଖୋଜ ପରି ଫୁଲି ଯାଇଛି । ଗୋଡ଼ସାରା ଆବୁ ଆବୁ ହୋଇ ବାହାରିଛି । ହାତୀର

ଗୋଡ଼ ପରି ଅସ୍ୱାଭାବିକ ଗୋଡ଼ରେ ଆକୃତି ଥିବା ସାନ ବଡ଼ ଆବୁ ଦେଖିଲେ ଯାହାକୁ ହେଲେ ବି ଭୟ ଲାଗିବ । ଗୋଦରରୋଗ ନେଇ ସମ୍ୟକ୍ ଧାରଣା ବନ୍ଧୁଙ୍କୁ ଦେବାଲାଗି, ରୋଗୀଙ୍କ ପରୀକ୍ଷା କରିସାରି ଔଷଧ ଲେଖି ବିଦାୟ ଦେଲାପରେ ରମେଶବାବୁ ବନ୍ଧୁ ଦୁହିଁଙ୍କ ପାଖରେ ଆସି ବସିଲେ ।




ଜନବନ୍ଧୁ ଚା' ଖାଇସାରି ଗପ ଆରମ୍ଭ କଲେ । ରମେଶବାବୁ କହିଲେ, ଗୋଦର ରୋଗୀଟିକୁ ଦେଖିଲ ତ ? ଆଜି ଗୋଦର ରୋଗ ନେଇ ତମକୁ କହିବି ।

ଗୋଦର ରୋଗର ଜୀବାଣୁ ଅନ୍ତ ସ୍ଥାନ । ନଳୀ ଆକୃତିର ଜାତିଏ କୃମି ଏମାନେ । ଏହାର ବୈଜ୍ଞାନିକ ନାମ ଉଚେରେଣିଆ ବାଙ୍କ୍‌ଫ୍‌ଟି ବା ଫାଇଲେରିଆ ବାନ୍କ୍ରଫ୍‌ଟି । ଏହି କୃମି ଏତେ ସାନ ଯେ ଖାଲି ଆଖିରେ ଦିଶନ୍ତି ନାହିଁ । ମାଇକ୍ରୋସ୍କୋପ୍ ତଳେ ଗୋଦର ରୋଗୀର ରକ୍ତ ପରୀକ୍ଷା କଲେ ଏହି କୃମି ଦେଖାଯିବ ।

ମାଈ କ୍ୟୁଲେକ୍‌ସ ମଶା ଏହି ଜୀବାଣୁକୁ ଜଣକ ଦେହରୁ ଅନ୍ୟ ଜଣକ ଦେହକୁ ବୋହି ନିଏ ବୋଲି ଏହି ମଶାକୁ ଗୋଦର ରୋଗର ବାହକ କହନ୍ତି । ଗୋଦର ରୋଗୀକୁ ମାଈ କ୍ୟୁଲେକ୍‌ସ ମଶା କାମୁଡ଼ିଲେ ସେ ରକ୍ତସହ ଫାଇଲେରିଆ କୃମିକୁ ମଧ୍ୟ ନିଜ ଦେହକୁ ଶୋଷିନିଏ । ଫାଇଲେରିଆ କୃମି ମଶାର କିଛି କ୍ଷତି କରେନାହିଁ । କିନ୍ତୁ ସେହି ମଶା ଭଲ ମଣିଷକୁ କାମୁଡ଼ିଲେ ଭଲ ମଣିଷର ଦେହ ଭିତରକୁ ଗୋଦର ରୋଗର ଜୀବାଣୁ ଯାଇ ତାକୁ ଗୋଦର ରୋଗ ହୁଏ ।

ଡାକ୍ତର ରମେଶବାବୁ ପୁଣି କହିଲେ ଯେ ଦେଖୁଛ ତ ଗୋଦର ରୋଗୀର ଦୁଃଖ । ଯାହା ହେଲେ ବି ଏ ମଶା ମାଛି ପୋକଙ୍କଠୁ ଦୂରରେ ରହିବ । ଘର ପାଖରେ ଘାସ, ଗଛ, ଲଟା ବୁଦା ସଫା କରିଦେବ । ମଶାରୀ ଟାଣି ଶୋଇବ । ମଶା ଯେପରି ଆଦୌ ନ କାମୁଡ଼େ ସେ ଦିଗକୁ ନିଶ୍ଚୟ ଦୃଷ୍ଟି-ଦେବ । ଏତିକି କଲେ ମଣିଷକୁ କେବେ ଗୋଦର ହେବନି କି ମେଲେରିଆ ଜ୍ୱର ବି ହେବ ନାହିଁ ।

# ଲୋଆଲୋଆ

ରମେଶ ବାବୁ ପୁଣି କହିଲେ ଯେ ନାନା ରକମର ରୋଗ ଏହିପରି ନାନା ଜାତିର ଛୋଟ ଛୋଟ କୃମିଙ୍କ ପାଇଁ ହୋଇଥାଏ । ସେହିପରି ଆଉ ଗୋଟିଏ ରୋଗ ହେଲା— ଆଖିରେ ହେଉଥିବା ଲୋଆଲୋଆ ନାମକ ଏକପ୍ରକାର ରୋଗ । ଏହି ଲୋଆଲୋଆ ରୋଗ କଥା ତମେମାନେ କେବେ କେହି ଶୁଣି ନଥିବ । ଆଫ୍ରିକାର ଲୋକମାନଙ୍କ ଆଖିରେ ଏହି ରୋଗଟି ହୋଇଥାଏ । ଆମ୍ବ ଓ ଆମ୍ବ ଗଛରେ ହେଉଥିବା ଜାତିଏ ମାଛିଦ୍ୱାରା ଏହି ଲୋଆଲୋଆ ରୋଗ ବ୍ୟାପିଥାଏ । ଆମ୍ବ ମାଛିଙ୍କ ଦେହରେ ଲୋଆଲୋଆ କୃମି ନିଜର ଲାର୍ଭା ଅବସ୍ଥାରେ ରହିଥାଏ । ଆମ୍ବ ମାଛି ମଣିଷକୁ କାମୁଡ଼ିଲେ ମାଛିଙ୍କ ଦେହରୁ ସେହି କୃମି ଚମତଳ ରକ୍ତନାଳୀରେ ଯାଇ ଶେଷରେ ଆଖିକୁ ଯାଏ ।

ଏହି ଲୋଆଲୋଆ ଯୋଗୁଁ ମଣିଷ ଆଖିରେ ଅତ୍ୟନ୍ତ ଗୁରୁତର ସମସ୍ୟା ସୃଷ୍ଟି ହୁଏ । ଲୋଆଲୋଆର କୃମି ଗୋଦର କୃମିର ସମ୍ପର୍କୀୟ । ଏହା ମସ୍ତିଷ୍କ ଓ ସୁଷୁମ୍ନାକାଣ୍ଡ ମଧ୍ୟକୁ ପ୍ରବେଶ କରି ଏକପ୍ରକାର ଜୀବାଣୁ ବା ଭାଇରସ୍‌କୁ ଛାଡ଼ିଦିଏ । ଭାଇରସ୍ ଯୋଗୁଁ ନାନା ରୋଗ ହୋଇଥାଏ । ଲୋଆଲୋଆ ଛାଡ଼ ଥିବା ଭାଇରସ୍ ମଣିଷ ଦେହକୁ ଆସିଲା

ପରେ ଦେହ ହାତ କୁଣ୍ଡେଇ ହୁଏ ଓ ଫୁଲିଯାଏ । ଏହା ବ୍ୟତୀତ ଲୋଆଲୋଆ ନମନ୍ତେ ଆଖିରେ ଅତ୍ୟନ୍ତ ପୀଡ଼ା ହୁଏ ଏବଂ ଆଖି ଫୁଲିଯାଏ ।

ବନ୍ଧୁ ରମେଶବାବୁଙ୍କ କଥା ଶୁଣି ରାମବାବୁ ଓ ମୋହନ ବାବୁ କହିଲେ ଯେ ଯାହାହେଉ, ଆମ ଦେଶରେ ଏ ଲୋଆ ଲୋଆ ରୋଗ ନାହିଁ । ଆମେ ସବୁ ତ ଆଖିର ଯତ୍ନ ନିଏ ନାହିଁ କି ମାଛି ନ ହେବା ଲାଗି କିଛି ଯତ୍ନ କରୁନାହିଁ ।

ଡାକ୍ତର ରମେଶ ବାବୁ ପୁଣି ଆରମ୍ଭ କଲେ- ହଉ, ଏଥର ଆଉ ଗୋଟିଏ କୃମି କଥା ଶୁଣ ସେ କୃମି ନାଁ ହେଉଛି ରାବ୍ଡ଼ାଇଟିସ୍ ବା ରାବ୍ଡ଼ିଟିସ୍ ।

## ରାବଡାଇଟସ୍ :

ଏମାନେ ମୁଖ୍ୟତଃ ମାଟିରେ, ପଚା ଜୈବିକ ଜିନିଷରେ, ପାଣିରେ, ମନୁଷ୍ୟ ଓ ଅନ୍ୟ ଜୀବଙ୍କର ମଳରେ ଥାଆନ୍ତି । ଏମାନଙ୍କର ଶ୍ଳେଷ୍ଟ ଲାର୍ଭା ଜିଆ ଦେହରେ ବି ରହିଥାଏ । ଏଇ ରାବ୍ଡ଼ାଇଟିସ୍ର ଦେହର ଲମ୍ବ ପ୍ରାୟ ୧.୭ ମି: ମି: । ମନୁଷ୍ୟର ଶରୀର (ହାତ, ଗୋଡ଼ ବା ଅନ୍ୟ ଅଙ୍ଗ) ଯେତେବେଳେ ମାଟିର ସଂସ୍ପର୍ଶରେ ଆସେ, ସେତେବେଳେ ଏଇ କୃମି ତା ଦେହ ମଧ୍ୟକୁ ପ୍ରବେଶ କରିଥାଏ । ଥରେ ମଣିଷ ଦେହରେ ପ୍ରବେଶ କଲାପରେ ସେ ଦେହରେ ରହି ମନଷ୍ୟ

ଖାଉଥିବା ଖାଦ୍ୟରୁ ଭାଗବସି ବଡ଼ ସୁରୁଖୁରୁରେ ବଞ୍ଚିଯାଏ । ଏହା ମଣିଷ ଦେହରେ ସେପରି କିଛି ମାରାତ୍ମକ ବା ଗୁରୁତର ଅବସ୍ଥା ସୃଷ୍ଟି କରେ ନାହିଁ ।




## ଆଙ୍କାଇଲୋଷ୍ଟୋମା

ମନୁଷ୍ୟ ଦେହକୁ ଆସୁଥିବା ଆଉ ଗୋଟିଏ କୃମି ହେଲା ଆଙ୍କାଇଲୋଷ୍ଟୋମା ଡୁଓଡେନେଲ୍ । ଏହାକୁ ସମସ୍ତେ

ହୁକ୍‌ଓ୍ୱାର୍ମ କହନ୍ତି । ଏହି କୃମି କ୍ଷୁଦ୍ରାନ୍ତ୍ର ମଧ୍ୟରେ ଥାଇ କ୍ଷୁଦ୍ରାନ୍ତ୍ରର କାନ୍ଥରୁ ରକ୍ତ ଶୋଷି ବଞ୍ଚେ । ପୁରୁଷ




ହୁକ୍‌ଓ୍ୱାର୍ମର ଲମ୍ବ ପ୍ରାୟ ୮ ମି. ମି. ରୁ ୧୧ ମି. ମି. ପର୍ଯ୍ୟନ୍ତ ହେଲାବେଳକୁ ସ୍ତ୍ରୀ କୃମିର ଆକାର ୧୦ ମି. ମି.ରୁ ୧୩ ମି. ମି. ହୋଇଥାଏ ।

ଆଙ୍କାଇଲୋଷ୍ଟୋମାର ରଙ୍ଗ ଧଳା ଓ ଧୂସରିଆ । ଏମାନଙ୍କର ଶରୀରର ଗୋଟିଏ ଅଗ ବଙ୍କା ଓ

ଙ୍ଗ୍ ଖିଆ କପ୍ ସଦୃଶ ହୋଇଥିବାରୁ ତାହା ସାହାଯ୍ୟରେ ଏହା ମଣିଷର କ୍ଷୁଦ୍ରାନ୍ତ୍ରର କାନ୍ଥକୁ ଧରି ଝୁଲି ରହିପାରେ ।

ଅଙ୍କାଇଲୋଷ୍ଟୋମାର ଅଗ ମୁଣ୍ଡ ଅଙ୍କୁଶ ବା ହୁକ୍ ସଦୃଶ ହୋଇଥିବାରୁ ତା ଦ୍ୱାରା କ୍ଷୁଦ୍ରାନ୍ତ୍ରର କାନ୍ଥରେ କ୍ଷତ (ଖଣ୍ଡିଆ) କରି ତହିଁରୁ ରକ୍ତ ଶୋଷି ବଞ୍ଚୁଥାଏ । କ୍ଷତ ଜାଗାରେ ଏହି କୃମିମାନେ ଏକପ୍ରକାର ରସ କ୍ଷରଣ କରନ୍ତି ଯାହା ନିମନ୍ତେ ସେହି ସ୍ଥାନରେ ରକ୍ତ ଜମାଟ ବାନ୍ଧେ ନାହିଁ । ଫଳରେ ବଡ଼ ଆରାମରେ ହୁକ୍‌ୱାର୍ମ ସେଠାରେ ରକ୍ତ ଖାଇ ଖାଇ ସେହି ସ୍ଥାନ ତ୍ୟାଗକରି ଅନ୍ୟ ଏକ ସ୍ଥାନକୁ ଯାଇ ପୁଣି ସେଠାରେ ଝୁଲିରହି ରକ୍ତ ଖାଏ ।

ଆଙ୍କାଇଲୋଷ୍ଟୋମା ଯୋଗୁଁ ମନୁଷ୍ୟ ଦୁର୍ବଳ ଓ ରକ୍ତହୀନ ହୋଇଯାଏ ।

ହୁକ୍‌ୱାର୍ମ ଥିବା ମନୁଷ୍ୟର ମଳ ପଡ଼ିଥିବା ମାଟି ଉପରେ ଯା-ଆସ ବା କାମଦାମ କଲେ ହୁକ୍‌ୱାର୍ମ କୃମିର ଲାର୍ଭା ପାଦ ବା ମାଟିରେ ଲାଗୁଥିବା ଅଙ୍ଗର ଚମକୁ ଫୁଟାଇ ଦେଇ ଶରୀର ମଧ୍ୟକୁ ପ୍ରବେଶ କରିଥାଏ । ଏହି ଲାର୍ଭା ଯେଉଁଠି ଦେହ ମଧ୍ୟକୁ ପ୍ରବେଶ କରେ ସେହି ସ୍ଥାନ କୁଣ୍ଡାଇ ହୁଏ ଓ ଘା ବା କ୍ଷତ ସୃଷ୍ଟି କରେ । ଏହାପରେ ଏହି ଲାର୍ଭା ଦେହର ବିଭିନ୍ନ ଅଙ୍ଗକୁ ଯା ଆସ କରେ ଓ ନିଜର ରୂପ ବଦଳାଇ ଅନ୍ୟ ଲାର୍ଭା ରୂପ ଧାରଣ କରେ ।

ଫୁସ୍‌ଫୁସ୍‌ରେ ପ୍ରବେଶ କରି ହୁକ୍‌ଓ୍ୱାର୍ମ ନିମୋନିଆ ସୃଷ୍ଟି କରେ ଓ ରକ୍ତ କ୍ଷରଣ ମଧ୍ୟ କରିଥାଏ । ପ୍ରାପ୍ତ ବୟସ୍କ ହୁକ୍‌ଓ୍ୱାର୍ମ ପାକସ୍ଥଳୀରେ ପୀଡ଼ା ସୃଷ୍ଟି କରେ । ହୁକ୍‌ଓ୍ୱାର୍ମ ପାଇଁ ଦେହ ରୁଗ୍‌ଣ ହୋଇଯାଏ, ଖାଉଥିବା ଖାଦ୍ୟ ପେଟରେ ଆମ୍ବିଳା ହୋଇଯାଏ, ଡାୟେରିଆ ବା ଉଦରାମୟ ରୋଗ ମଧ୍ୟ ହୁଏ । ଗୁଡ ଧଡ଼ ଧଡ଼ କରିବାଠୁ ଆରମ୍ଭ କରି ଇଓସିନୋଫିଲିଆ ଆଦି ନାନା ରକମର ରୋଗ ସୃଷ୍ଟି କରି ଏହା ମନୁଷ୍ୟକୁ ବଡ଼ ବ୍ୟତିବ୍ୟସ୍ତ କରିପକାଏ ।

ମଳମୂତ୍ର ତ୍ୟାଗ କରାଯାଉଥିବା ମାଟିରେ ବା ପଙ୍କଆରେ ଖୋଲା ପାଦରେ ଯା-ଆସ କରିବା ଦ୍ୱାରା ଏହି ହୁକ୍‌ଓ୍ୱାର୍ମ କୃମି ଶରୀରକୁ ଆସିଥାନ୍ତି ।

## ଡ୍ରାକନ୍‌କୁଲସ୍ ମେଡ଼ ନେନ୍‌ସିସ୍ :

ଆଉ ଏକ ଅଦ୍ଭୁତ କିସମର କୃମି ହେଉଛି ଗିନି କୃମି । ଏହାର ନାମ—ଡ୍ରାକନ୍‌କୁଲସ୍ ମେଡ଼ିନେନ୍‌ସିସ୍ ।

ଏହାକୁ ସର୍ପ କୃମି ମଧ୍ୟ କୁହାଯାଏ । କାରଣ ସାପ ଯେପରି ଭୟଙ୍କର ଠିକ୍ ସେହିପରି ଏହି କୃମି ମଧ୍ୟ ମନୁଷ୍ୟ ଶରୀର ନିମନ୍ତେ ଭୟଙ୍କର । ଯେତେ କୃମି ଅଛନ୍ତି, ସମସ୍ତଙ୍କ ମଧ୍ୟରେ ଏହି ଗିନି କୃମି ସବୁଠାରୁ ଆକାରରେ ବୃହତ୍ । ପୁରୁଷ କୃମିର ଲମ୍ବ ୧୨ରୁ ୪୦ ମି.ମି. ହେବା ସ୍ଥଳେ

ସ୍ତ୍ରୀ କୃମିର ଲମ୍ବ ପ୍ରାୟ ୭୦ ମି. ମି. ରୁ ୧୨୦ ମି. ମି. ପର୍ଯ୍ୟନ୍ତ ହୋଇଥାଏ ।

ମନୁଷ୍ୟର ଚମ ତଳେ ଏହି କୃମି ଗୁଡ଼େଇ ହୋଇ ରହିଥାଏ । ସାଧାରଣତଃ ଶରୀରରେ ସ୍ତ୍ରୀ କୃମିଙ୍କ ସଂଖ୍ୟା ଅପେକ୍ଷା ପୁରୁଷ କୃମିଙ୍କ ସଂଖ୍ୟା ଅଧିକ ଥାଏ ।




ଗିନି କୃମି ଥିବା ମନୁଷ୍ୟ ଯେତେବେଳେ ପାଣିର ସଂସ୍ପର୍ଶରେ ଆସେ, ସ୍ତ୍ରୀଗିନି ଓ୍ୱାର୍ମ ଚର୍ମ ଉପରେ

ଗୋଟିଏ ଫୋଟକା ସୃଷ୍ଟି କରି ତା' ଶରୀରର କିଛି ଅଂଶ ପଦାକୁ ବାହାର କରି ଆଣେ ଓ ସେହି ଅଂଶ ଦେଇ ନିଜର ଛୋଟ ଛୋଟ ଛୁଆ ପାଣିରେ ଛାଡ଼ିଦିଏ । ଗିନିଓ୍ୱାର୍ମ ଚମ ତଳେ ଏକପ୍ରକାର ବିଷାକ୍ତ ରସ କ୍ଷରଣ କରିବା ଦ୍ୱାରା ତାହା ଅଳ୍ପମାତ୍ରାରେ କୁଣ୍ଡାଇ ହୁଏ ଓ ଚମ ଉପରେ ଫୋଟକା ପରି ହୋଇଯାଏ ।

ମାଈ ଗିନି କୃମି ପାଣିକୁ ଛାଡ଼ୁଥିବା ଛୁଆମାନେ ପାଣିରେ ବୁଲି ବୁଲି ଯେତେବେଳେ ସାଇକ୍ଲୋପ୍ସ (ପାଣିରେ ଥିବା ଛୋଟ ଛୋଟ ଆର୍ଥ୍ରୋପୋଡ୍ ଶ୍ରେଣୀର ଜୀବ) ଦ୍ୱାରା ଉଦରସ୍ଥ ହୁଏ ସେତେବେଳେ ସେଠାରେ ସେ ବଢ଼ିଥାଏ । ମନୁଷ୍ୟର ଶରୀରରେ ଲାଗି ବା ପିଇବା ପାଣି ସହ ଯେତେବେଳେ ଏହି ଛୋଟ ସାଇକ୍ଲୋପ୍ସ ପୋକ ପେଟକୁ ଯାଏ-- ସେଠାରୁ ଗିନିଓ୍ୱାର୍ମର ଛୋଟ ଛୋଟ ଭ୍ରୂଣ ବାହାରି ପାକସ୍ଥଳୀ ମଧ୍ୟ ଦେଇ ଶରୀର ଗହ୍ୱରକୁ ଆସନ୍ତି ଓ ନିର୍ଦ୍ଦିଷ୍ଟରେ ଚମ ତଳକୁ ଯାଇ ସେଠି ବଢ଼ିବାରେ ଲାଗନ୍ତି ଓ ପୂର୍ଣ୍ଣାବସ୍ଥା ପ୍ରାପ୍ତ ହୋଇ ଚମ ତଳେ ରହିଯାଆନ୍ତି ।

ତେଣୁ ପାଣିରେ କାରବାର କରୁଥିବା ଧୋବା ବା ମାଟି କାଦୁଅରେ କାମ କରୁଥିବା ମୂଲିଆ ମଜୁରିଆଙ୍କ ଦେହରେ ଏହି ଗିନି କୃମି ଦେଖାଯାଇଥାଏ ।

ଏହି ଗଣ୍ଡକୃମି ଶ୍ୱାସରୋଗ, ଦେହଫୁଲା, ଦେହ କୁଣ୍ଡେଇହେବା, ବାନ୍ତି ହେବା, ଅଜୀର୍ଣ୍ଣ ଝାଡ଼ା, ଇଓସିନୋଫିଲିଆ ଆଦି ରୋଗ କରାଇଥାଏ । ପାଣିକୁ ସିଝାଇ ଛାଣି ପିଇବା ଦ୍ୱାରା ଏହି ରୋଗକୁ ଦୂର କରାଯାଇପାରେ ।

ଆଉ ଏକ ପରଜୀବୀ କୃମି ହେଲା—ଟ୍ରିକନେଲା ସ୍ପାଇରାଲିସ ।

## ଟ୍ରିକିନେଲା ସ୍ପାଇରାଲିସ୍ ବା ଟ୍ରିଚନେଲା

ମନୁଷ୍ୟ ଦେହରେ ଇଏ କରୁଥିବା ରୋଗକୁ 'ଟ୍ରାଇକନୋସିସ' କୁହାଯାଏ । ଟ୍ରାଇକନେଲ୍ ଆକାରରେ ଅତି ଛୋଟ । ପୁରୁଷ କୃମିର ଲମ୍ବ ୨.୪ ମି. ମି. ରୁ ୧.୭ ମି. ମି. ହୋଇଥାଏ । ମାଈ କୃମି ୩ରୁ ୪ ସେ.ମି. ଲମ୍ବର ହୋଇଥାଏ । ମନୁଷ୍ୟର ଅନ୍ତର ବିଭିନ୍ନ ସ୍ଥାନରେ ପୂର୍ଣ୍ଣାବସ୍ଥାର ଟ୍ରାଇକିନେଲ୍ ରହି ପେଟବଥା, ରକ୍ତକ୍ଷରଣ, ମାଂସପେଶୀ ମୋଡ଼ି ହୋଇଯିବା, ଅଜୀର୍ଣ୍ଣ ଝାଡ଼ା, ଇଓସିନୋଫିଲିଆ ଆଦି ରୋଗ କରିଥାଏ । ବାନ୍ତି ଲାଗିବାଠାରୁ ଆରମ୍ଭ କରି ମୂତ୍ରଯନ୍ତ୍ର ବନ୍ଦ ହେବା ଆଦି ନାନା ରୋଗର କାରଣ ଏହି ଟ୍ରିକନେଲ୍ କୃମି ହୋଇଥାଏ ।

ମନୁଷ୍ୟର ଝାଡ଼ାସହ ଏମାନଙ୍କ ଅଣ୍ଡା ମାଟିକୁ ଯାଏ । ଘୁଷୁରି ଆଦି ମଳ ଭକ୍ଷଣ କରୁଥିବା ପଶୁ ସେମାନଙ୍କ ଖାଦ୍ୟ-

ନଳୀ ମଧ୍ୟକୁ ଏହାର ଅଣ୍ଡା ନଅନ୍ତି । ଏହାର ଅଣ୍ଡା ବିଭିନ୍ନ ଲର୍ଭା ଅବସ୍ଥାରେ ଘୁଷୁରି ଶରୀରର ବିଭିନ୍ନ ଅଙ୍ଗ ମଧ୍ୟକୁ ଯାଏ ଓ ଘୁଷୁରିର ଚମ ତଳେ ସିଷ୍ଟ ତିଆରି କରି ରହିଥାଏ । ଯେଉଁ ମଣିଷମାନେ ଘୁଷୁରି ମାଂସକୁ ଭଲକରି ନ ସିଝାଇ ଖାଆନ୍ତି, ସେହିମାନଙ୍କ ଦେହକୁ ଟ୍ରିକିନେଲାର ସିଷ୍ଟ ଯାଏ ଓ ନାନା ଲର୍ଭା ଅବସ୍ଥା ପାର ହୋଇ ପୂର୍ଣ୍ଣାବସ୍ଥାକୁ ଆସେ ।




ଘୁଷୁରି ମାଂସରେ ଥିବା ଏହି ଟ୍ରିକିନେଲାର ସିଷ୍ଟ ୧୧ ବର୍ଷ ସୁରକ୍ଷିତ ରୂପରେ ରହିପାରେ । ଗୋଟିଏ ସିଷ୍ଟ ମଧ୍ୟରେ

୧ରୁ ୭ଟି ଯୁଭେନାଇଲ୍ (ଯୌନ୍ଧ ଅବସ୍ଥା) ରହିପାରେ । ଜଣେ ଯଦି ଘୁଷୁରି ମାଂସକୁ ଉତ୍ତମ ରୂପେ ସିଦ୍ଧ କରି ଖାଇବ ତେବେ ଘୁଷୁରି ମାଂସରେ ଥିବା ଏ ଯୁଭେନାଇଲ ନଷ୍ଟ ହୋଇଯିବ ଓ ଟ୍ରାଇକନୋସିସର ଭୟ ନ ଥିବ ।

## ଟ୍ରାଇକ୍ୟୁରିସ୍ ଟ୍ରାଇକ୍ୟୁରା (ଚାବୁକ କୃମି)

ମଣିଷକୁ ଆକ୍ରାନ୍ତ କରୁଥିବା ଆଉ ଏକ କୃମି ହେଲା ଟ୍ରାଇକ୍ୟୁରସ୍ ଟ୍ରାଇକ୍ୟୁରା । ଏହି କୃମିର ଦେହରେ ଗୋଟିଏ ଅଗ ଅତ୍ୟନ୍ତ ପତଳା ସରୁ ଚାବୁକ ଆକୃତିର ହୋଇଥିବାରୁ ଏହାକୁ ଚାବୁକ କୃମି ବୋଲି ମଧ୍ୟ କୁହାଯାଏ । ପୃଥିବୀର ସମସ୍ତ ଦେଶରେ ବିଶେଷତଃ ଉଷ୍ଣ ଅଞ୍ଚଳରେ ଏହି କୃମି ପ୍ରାୟତଃ ଦେଖାଯାଇଥାଏ । ମନୁଷ୍ୟର ଖାଦ୍ୟନଳୀରେ ଦୁଇ ଅନ୍ତ୍ର ମଝିରେ ଥିବା ସିକମ୍ (ଏକ ଥଳୀ) ଓ ଭର୍ମିଫର୍ମ ଆପେଣ୍ଡିକ୍ସ, ଅନ୍ତ୍ର ଓ ଅନ୍ତ୍ରର କାନ୍ଥିରେ ଏହି କୃମି ରହିଥାଏ । ଏହି କୃମି ଦେହର ଲମ୍ବ ୩୦ ମି:ମି: ରୁ ୫୦ ମି:ମି: ପ୍ରାୟ ହୋଇଥାଏ । ଏହି କୃମି ଶରୀରର ପ୍ରଥମ ଦୁଇ ତୃତୀୟାଂଶ ଅତ୍ୟନ୍ତ ସରୁ ଆକାରର ହୋଇଥାଏ ଓ ଏଥିରେ ତାହାର ଖାଦ୍ୟନଳୀ ଥାଏ । ଟ୍ରାଇକ୍ୟୁରସ୍ ମନୁଷ୍ୟ ଅନ୍ତ୍ର ମଧ୍ୟରେ ଥାଇ ତାହାର ଗ୍ରନ୍ଥିରେ ଥିବା କୋଷ ଓ ରକ୍ତ ଖାଇ ବଞ୍ଚି ରହେ । ଏମାନଙ୍କ ଅଣ୍ଡା ମନୁଷ୍ୟର ମଳସହ ମିଶି ମାଟିକୁ ଚାଲି ଆସେ । ସନ୍ତସନ୍ତିଆ ମାଟିରେ ଅଣ୍ଡାରୁ ଛୁଆ ଫୁଟି ସେହିପାରେ

ଉହ୍ନ ବଢ଼ିଥାନ୍ତି । ମନୁଷ୍ୟ ଯେତେବେଳେ ମାଟିରୁ ଉଠେଇ ଖାଦ୍ୟଦ୍ରବ୍ୟ ଖାଏ ଓ ମାଟିରୁ ତୋଳା କଞ୍ଚା ଫଳମୂଳ ଖାଏ ତା ଦେହ ମଧ୍ୟକୁ ଟ୍ରାଇକ୍ୟୁରସ୍ ଲାର୍ଭା ପ୍ରବେଶ କରେ । ଅପରିଷ୍କାର ପାଣି ପିଇବାଦ୍ୱାରା ମଧ୍ୟ ଏହାର ଲାର୍ଭା ମନୁଷ୍ୟ ଦେହ ମଧ୍ୟକୁ ଆସେ ।




ମନୁଷ୍ୟ ଶରୀରରେ ଟ୍ରାଇକ୍ୟୁରସ ଥିଲେ, ରକ୍ତହୀନତା, ରକ୍ତଝାଡ଼ା ଓ ପେଟବ୍ୟଥା ହୋଇଥାଏ । ଯଦି ମନୁଷ୍ୟ ପାଇଖାନାରେ ଝାଡ଼ା ଯିବ, ଇଆଡ଼େ ସିଆଡ଼େ – ରାସ୍ତାରେ,

ବଲମାଲରେ ଝାଡ଼ା ନଯିବ ତେବେ ଟ୍ରାଇକ୍ୟୁରିସ ଦେହକୁ ଆସିବ ନାହିଁ କି ମଣିଷ ଏପରି ହରବର ହେବନାହିଁ ।

ଆଉ ଏକ ଅତି ସାଧାରଣ କୃମି ହେଲା ପିଲାଙ୍କ ପେଟରେ ବା ବଡ଼ ମଣିଷଙ୍କ ପେଟରେ ହେଉଥିବା ଦଶିପୋକ । ଏହାର ନାମ ଏଣ୍ଟେରୋବିଅସ ଭର୍ମିକୁଲାରିସ ।

## ଏଣ୍ଟେରୋବିଅସ ଭର୍ମିକୁଲାରିସ

ପୃଥିବୀସାରା ମଣିଷଙ୍କ ପେଟରେ ଏହି ଦଶିପୋକ ଅଳ୍ପ ବହୁତେ ଦେଖାଯାଏ । ମନୁଷ୍ୟର ଅନ୍ତରେ, ଖାଦ୍ୟ-ନଳୀର ଶେଷଭାଗରେ ଭର୍ମିଫର୍ମ ଆପେଣ୍ଡିକ୍ସ ଇତ୍ୟାଦି ଏହି କୃମିର ରହିବା ସ୍ଥଳ । ଏହାର ଆକାର ଅତି ସାନ, ସରୁ ସୂତା ପରି । ତେଣୁ ଏହାକୁ ସୂତା କୃମି ମଧ୍ୟ କୁହାଯାଏ । ପୁରୁଷ କୃମିର ଲମ୍ବ ୨ ମି:ମି:ରୁ ୫ ମି:ମି: ପର୍ଯ୍ୟନ୍ତ ହେବା ସ୍ଥଳେ ସ୍ତ୍ରୀ କୃମିର ଲମ୍ବ ୮ ମି:ମି:ରୁ ୧୩ ମି:ମି: ପର୍ଯ୍ୟନ୍ତ ହୋଇଥାଏ ।

ଏହି କୃମିର ଏକ ପ୍ରାନ୍ତର ଅଗ୍ରରେ ତୀକ୍ଷ୍ଣ ଓଠ ସଦୃଶ ଅଂଶ ଥାଏ, ଯାହାଦ୍ୱାରା ସେ ମଳଦ୍ୱାର ମୁହଁକୁ ଆଘାତ କରିଥାଏ ।

ଏଣ୍ଟେରୋବିଅସର ଜୀବନଚକ୍ର ଅତ୍ୟନ୍ତ ସରଳ । ସ୍ତ୍ରୀ କୃମି ରାତିରେ ମଳଦ୍ୱାର ମୁହଁରେ ଅଣ୍ଡାପାରେ ଓ ମଳଦ୍ୱାର




ମୁହଁକୁ ନିଜର ଓଠ ସାହାଯ୍ୟରେ ଆଘାତ କରେ । ତେଣୁ ସାନପିଲା ଆଙ୍ଗୁଠି ଅଗରେ ମଳଦ୍ୱାର ମୁହଁକୁ ରଗଡ଼ନ୍ତି, କୁଣ୍ଡାନ୍ତି । ଏହିପରି କରିବାଦ୍ୱାରା କୃମିର ଅଣ୍ଡା ନଖ ସନ୍ଧିରେ ଲାଗି ରହେ । ପିଲା ହେଉ ବା ବଡ଼ ହେଉ ଯେଉଁମାନେ ହାତ ପରିଷ୍କାର ଭାବରେ ନଧୋଇ ଖାଦ୍ୟ ଖାଆନ୍ତି ସିଧାସଳଖ

କୃମି ଅଣ୍ଡା ପାଟି ମଧ୍ୟକୁ ଯାଇ ପାଟିରୁ ଖାଦ୍ୟନଳୀ ଦେଇ ପେଟ ମଧ୍ୟକୁ ଚାଲିଆସେ ।

ଏଣେତେଣେଅପର ଅଣ୍ଡାରୁ ଛୁଆଫୁଟି ପୁଣି ଖାଦ୍ୟ-ନଳୀର ଶେଷ ଭାଗରେ ପହଞ୍ଚିଯାଆନ୍ତି ଓ ତାଙ୍କର ଜୀବନଚକ୍ର ସୁରୁଖୁରୁରେ ସମ୍ପାଦିତ ହୁଏ ।

ପରିଷ୍କାର-ପରିଚ୍ଛନ୍ନ ରହିବାଦ୍ୱାରା, ନଖ କାଟି ଆଙ୍ଗୁଠି ସଫା ରଖିବାଦ୍ୱାରା ଏହି ଦଶିକୃମି ଆକ୍ରମଣରୁ ରକ୍ଷା ମିଳିପାରେ । ପିନ୍ଧା ଲୁଗାପଟାକୁ ପରିଷ୍କାର କରି ଧୋଇ, ଗରମ ପାଣିରେ ସିଝେଇ, ଟାଣ ଖରାରେ ଶୁଖାଇବାଦ୍ୱାରା କୃମି ଅଣ୍ଡା ନଷ୍ଟ ହୋଇଯାଏ । ସବୁ ବୁଝି ସାବଧାନ ହେଲେ ଏ କୃମି ଖାଦ୍ୟ ସହ ଦେହ ମଧ୍ୟକୁ ଯାଏ ନାହିଁ । ଯଦି ମଣିଷ ଅନ୍ତତଃ ଆଠଟି ସପ୍ତାହ ପରିଷ୍କାର-ପରିଚ୍ଛନ୍ନ ରହିପିବ ଓ ପିଲାକୁ ଶୁଆଇଲାବେଳେ ପିଲାଙ୍କୁ ଜଗିବ, ଯେପରି ସେ ନ କୁଣ୍ଡେଇବ –ତେବେ ଦଶିପୋକ ଆକ୍ରମଣରୁ ନିଜକୁ ରକ୍ଷାକରିଯାଇ ପାରିବ ।

ଆଉ ଗୋଟିଏ ଅତି କୌତୁହଳପୂର୍ଣ୍ଣ କୃମି ହେଲା–ଟୋକ୍‌ସୋକେର୍‌ କାନିସ୍‌ ।

## ଟୋକ୍‌ସୋକେରା କାନିସ୍‌

ଏହି କୃମି କେବଳ କୁକୁରଙ୍କଠି ହୋଇଥାଏ । ମା' କୁକୁରଠାରୁ ତା' ପେଟରେ ବଢ଼ୁଥିବା ଭ୍ରୂଣ ଦେହକୁ ଏହି

କୃମି ପ୍ଲାସେଣ୍ଟା ବା ଭ୍ରୂଣ ପୁଷ୍ଟିକା ଦ୍ୱାରା ଆସିଥାଏ । ତେଣୁ କୁକୁର ଛୁଆ ଜନ୍ମ ହେଲାପରେ ବାହାରୁ କୌଣସି ଖାଦ୍ୟ ନ ଖାଇଲେ ମଧ୍ୟ ତା ପେଟରେ ଟୋକ୍ସୋକେରା କୃମି ପ୍ରଚୁର ଥାଆନ୍ତି । ମା' କୁକୁର ପେଟରେ ଯେତକ ସଂଖ୍ୟାରେ ଏହି କୃମି ଥାଏ, ତାହାଠାରୁ ଯଥେଷ୍ଟ ଅଧିକ ସଂଖ୍ୟକ କୃମି କୁକୁର ଛୁଆଙ୍କ ପେଟରେ ଥାଏ ।

ପୂର୍ଣ୍ଣବୟସ୍କ ପୁରୁଷ ଓ ସ୍ତ୍ରୀ କୃମିଙ୍କ ଲମ୍ବ ଯଥାକ୍ରମେ ପ୍ରାୟ ୧୦ ସେ:ମି: ଓ ୨୦ ସେ:ମି: ହୋଇଥାଏ । ବଡ଼ କୁକୁରର ମଳରେ ଥିବା ଏହି କୃମିଙ୍କ ଅଣ୍ଡାରେ ଭ୍ରୂଣ ବଢ଼ିବାକୁ ଲାଗିଥାଏ । ଯେତେବେଳେ ତାକୁ ମାଟିରୁ ବଡ଼ କୁକୁର ନିଜର ଖାଦ୍ୟ ସହ ଆହରଣ କରେ, ସେତେବେଳେ ଖାଦ୍ୟସହ ଟୋକ୍ସୋକେରାର ଅଣ୍ଡା ଓ ଭ୍ରୂଣ ତା ପେଟ ମଧ୍ୟକୁ ଯାଇଥାଏ । ପେଟ ମଧ୍ୟରେ ଅଣ୍ଡାରୁ ଫୁଟି ଟୋକ୍ସୋକେରାର ଲାର୍ଭା କୁକୁରର ଶରୀର ମଧ୍ୟରେ ନାନା ପଥରେ ଗତିକରି ଶେଷରେ କ୍ଷୁଦ୍ରାନ୍ତ ମଧ୍ୟକୁ ପ୍ରବେଶ କରିଥାଏ ।

ଏକବର୍ଷରୁ ତିନିବର୍ଷ ମଧ୍ୟରେ ମଣିଷ ଛୁଆ ଯେତେବେଳେ ଭୂଇଁରୁ ଗୋଟାଇ ଖାଦ୍ୟ ପଦାର୍ଥ ଖାଏ,

ମାଟି ଖାଏ ସେତେବେଳେ ସେ ଟୋକ୍‌ସୋକେରାର ଅଣ୍ଡା ଓ ଲାର୍ଭା ପେଟ ମଧ୍ୟକୁ ନେଇଥାଏ ।

ମଣିଷର ପେଟରେ ଏତେ ଗୁରୁତର ଅବସ୍ଥା ସୃଷ୍ଟି ନ କଲେ ମଧ୍ୟ ଯେତେବେଳେ ଅତ୍ୟଧିକ ସଂଖ୍ୟାରେ ପେଟରେ ଜନ୍ମିତ, ସେତେବେଳେ ଛୁଆ ପାଇଁ ଏହି ଟୋକ୍‌ସୋକେରା ଶଙ୍କାର ବିଷୟ ହୋଇଯାଏ । ଏହାପରେ ଦୁଇ ବନ୍ଧୁ ଡାକ୍ତରଙ୍କ ପାଖରୁ ବିଦାୟ ନେଲେ ।

---

# ପ୍ରୋଟୋଜୋଆ ଓ ରୋଗ

ରାମବାବୁ ଡ଼ାକ୍ତରବନ୍ଧୁ ରମେଶ ବାବୁଙ୍କଠାରୁ ନାନା ଜାତର କୃମି ଓ ସେମାନେ କରାଉଥିବା ରୋଗନେଇ ଯାହା ଯାହା ଶୁଣିଥିଲେ ନିଜ ପୁଅ ସାନ୍ ଆଗରେ କହିଲେ । ସାନ୍ ସାନ ହେଲେ ବି ନାନା ବିଷୟରେ ତାର ଆଗ୍ରହ । ନାନା କଥା ଜାଣିବାକୁ ତା'ର ମନ । ଦିନେ ସେ ତା ବାପାମା'ଙ୍କର ଅନୁମତି ନେଇ ଡ଼ାକ୍ତର ରମେଶ ମଉସାଙ୍କ ଘରକୁ ତା'ର ଗୋଟିଏ ସାଙ୍ଗ ପୁପୁ ସହ ଯାଇ ପହଞ୍ଚିଲା ।

ସାନୁର ରୋଗସବୁ ନେଇ ଜାଣିବାର ଏତେ ଆଗ୍ରହ ଦେଖି ଡ଼ାକ୍ତର ରମେଶବାବୁ ଭାରି ଖୁସି ହୋଇଗଲେ । ସେତେବେଳକୁ ଡ଼ାକ୍ତରଙ୍କ ପାଖକୁ ବଥ ରୋଗୀଟିଏ ଆସିଥିଲା । ବଥଟି ଖୁବ୍ ବଡ଼ ଆକାରର ହୋଇଥିଲା । ରୋଗୀଟି ବହୁତ କଷ୍ଟ ପାଉଥିଲା ।

ରୋଗୀଟିକୁ ଦେଖି ସାନୁ ପ୍ରଶ୍ନ କଲା, "ମଉସା, ବଥ କାହିଁକି ହୁଏ କହିଲେ ?" ସାନୁର ପ୍ରଶ୍ନ ଶୁଣି ଉତ୍ତରଦେବା ପୂର୍ବରୁ ଡ଼ାକ୍ତରବାବୁ ବଥ ରୋଗୀକୁ ଔଷଧ ଦେଇସାରି ବିଦାୟ ଦେଇଦେଲେ । ତା'ପରେ ସେ ସାନ୍ ପାଖରେ ଆସି

ବସିଲେ । ଜାଣିପାରଲେ ସାନୁ କଣ ପାଇଁ ତାଙ୍କ ପାଖକୁ ଆସିଛି । ସେଠ ଡ଼ାକ୍ତର ମଉସା କହିଲେ, "ଆଚ୍ଛା ସାନୁ ତୁ କହିଲୁ ବଥ କାହିଁକି ହୁଏ ?"

ସେଠୁ ସାନୁ କାହିଲା—"ମୁଁ ଜାଣିଛି ରାସ୍ତାରେ ଝାଡ଼ା ଫେରଲେ ବଥ ହୁଏ, ପୁଣି ମିଛ କହିଲେ ବଥ ଉଠେ । ଏଇଥିରୁ କେଉଁ କଥାଟି ଠିକ୍ ? ସେ ରୋଗୀ ଲୋକ କଣ ରାସ୍ତାରେ ଝାଡ଼ା ଫେରଥିବେ ନା ମିଛ କହିଥିବେ ?"

ସାନୁର କଥାଶୁଣି ଡାକ୍ତର ରମେଶବାବୁ ଟିକେ ହସି ଦେଲେ କହିଲେ ନାରେ ଏ ଦୁଇଟିଯାକ କଥା ଭୁଲ । ବଥ ଗୋଟିଏ ପ୍ରକାର ପ୍ରୋଟୋକୋଆ ପାଇଁ ହୋଇଥାଏ ।

ପ୍ରୋଟୋକୋଆ କ'ଣ ଜାଣିଛୁ ନା ? ଏ ପ୍ରୋଟୋକୋଆ ଏକପ୍ରକାର ଅତିସାନ ପ୍ରାଣୀ । ବଡ଼ ବଡ଼ ଜୀବଜନ୍ତୁ ଜନ୍ମ ହେବାର ବହୁତ ପୂର୍ବରୁ ପ୍ରୋଟୋକୋଆ-ମାନେ ପୃଥିବୀରେ ଜନ୍ମିଥିଲେ । ତାଙ୍କ ଦେହରେ ଗୋଟିଏ ବୋଲି କୋଷ ଅଛି । ତେଣୁ ଏକକୋଷୀ ଜୀବ ମଧ୍ୟ କୁହାଯାଏ ।

ଆଉ ଏ ଜୀବମାନେ ଖାଲି ଆଖିକୁ ଦେଖା ଯାଆନ୍ତି ନାହିଁ । ଅଣୁବୀକ୍ଷଣ ଯନ୍ତ୍ର ବା ମାଇକ୍ରୋସ୍କୋପ୍ ତଳେ

ଗୋଟିଏ କାଚ ପାତ୍ରରେ ରଖି ପରୀକ୍ଷା କଲେ ଏମାନଙ୍କୁ ଜାଣି ହୁଏ । ଆଉ ଜାଣିଚୁ ନା, ନାନା ରକମର ବେମାରୀ ଏମିତି ନାନା ଜାତିର ପ୍ରୋଟୋଜୋଆଙ୍କ ପାଇଁ ହୋଇଥାଏ ।

ଡାକ୍ତର ମଉସାଙ୍କ କଥା ଶୁଣି ସାନ୍ କହିଲା "ହଁ, ତ ମଉସା, ମୁଁ ଜାଣିଛି ପୂର୍ବରୁ ଏମିତି ଆମିବା, ବାଲାଣ୍ଟିଡ଼ିୟମ ଓ ଜିଆର୍ଡିଆଙ୍କ କଥା । ସେମାନଙ୍କ ପାଇଁ ନାଳଝାଡ଼ା ଆଦି ନାନା ରକମର ପେଟ ରୋଗ ହୋଇଥାଏ । ଆଉ ସବୁ କି କି ରୋଗ ଏ ପ୍ରୋଟୋଜୋଆଙ୍କ ପାଇଁ ହୋଇଥାଏ କୁହନ୍ତୁ ତ ।"

## ଏଣ୍ଟାମିବା ଜିଞ୍ଜିଭାଲିସ

ସାନ୍‌ର ଆଗ୍ରହ ଦେଖି ରମେଶବାବୁ କହିଲେ— ଗୋଟିଏ ପ୍ରକାର ଆମିବା ଅଛନ୍ତି, ତା ନାଁ ଏଣ୍ଟାମିବା ଜିଞ୍ଜିଭାଲିସ । ଏମାନେ ପାଟିରେ, ଦାନ୍ତ ମୂଳରେ ହୋଇଥାନ୍ତି । ଏମାନଙ୍କ ପାଇଁ ପାଟି ଦୁର୍ଗନ୍ଧ ହୁଏ । ଏମାନେ ପାଟିରେ ରହି ସେଠାରେ ଲାଗିଥିବା ଖାଦ୍ୟପଦାର୍ଥକୁ ପଚେଇ ଦିଅନ୍ତି । ଫଳରେ ଏପରି ଦୁର୍ଗନ୍ଧ ବାହାରେ । ଆଉ ଯାହା ଦାନ୍ତରେ ପାୟୋରିଆ ଥାଏ ସେ ତ ଏଇ ଜିଞ୍ଜିଭାଲିସ୍ ପାଇଁ ବଢ଼ିଯାଏ ।

## ଏଣ୍ଟାମିବାହିଷ୍ଟୋଲିଟିକା

ଆଉ ଗୋଟିଏ ପ୍ରକାର ଆମିବା ହେଉଛି ଏଣ୍ଟାମିବା ହିଷ୍ଟୋଲିଟିକା । ତା କଥା ତ ତୁ ପୂର୍ବରୁ ଜାଣିଛୁ । ମଣିଷଙ୍କଠି

ଅମାଶୟ ଝାଡ଼ା ବା ନାଲ ଝାଡ଼ା ଇଏ କରେ । ଏମାନେ ଅନ୍ତନାଳୀ ମଧ୍ୟରେ ରହି ତା କାନ୍ଥିକୁ ଖାଇଯାଆନ୍ତି ଓ ସେଠାରେ ଘା ସୃଷ୍ଟି କରନ୍ତି ଓ ନାଲଝାଡ଼ା ସୃଷ୍ଟି କରିଥାନ୍ତି । ଯଦି ଜଣେ ଏ ପ୍ରକାର ଝାଡ଼ାରେ ଭୋଗୁଥିବା ରୋଗୀ ଅନେକ ଦିନ ପର୍ଯ୍ୟନ୍ତ କୌଣସି ଔଷଧପତ୍ର ନଖାଏ ତେବେ ଏହି ଆମ ଝାଡ଼ା ବା ନାଲ ଝାଡ଼ା ଲାଗିରହେ । ଆମାଶୟ ଝାଡ଼ା ହେବା ଫଳରେ ପେଟରେ କଷ୍ଟ ହେବାଠାରୁ ଆରମ୍ଭ କରି ମୁଣ୍ଡବିନ୍ଧା, ବାନ୍ତିଲାଗିବା, ପେଟଫାମ୍ପିବା ଓ ଝାଡ଼ାଯିବାରେ ଅନିୟମିତତା ପରିଲକ୍ଷିତ ହୋଇଥାଏ । ଅଳ୍ପ ପରିଶ୍ରମ କରୁ କରୁ ହାଲିଆଲାଗିବା, କାମ କରିବାରେ ମନ ନ ଲାଗିବା ଆଦି ଲକ୍ଷଣ ଏହି ନାଲଝାଡ଼ା ଯୋଗୁଁ ପରିଲକ୍ଷିତ ହୋଇଥାଏ ।

## ଏଣ୍ଟାମିବା କୋଲି

ଆଉ ଗୋଟିଏ ଆମିବା ହେଉଛି ଏଇ ଏଣ୍ଟାମିବା କୋଲି । ସାଧାରଣରେ ସବୁ ମଣିଷଙ୍କ ଦେହରେ ଏହି ଏଣ୍ଟାମିବା ଦେଖାଯାଇଥାଏ । ଏମିତି କୌଣସି ମନୁଷ୍ୟ ନାହାନ୍ତି, ଏମିତି କୌଣସି ସ୍ଥାନ ନାହିଁ କି ଦେଶ ନାହିଁ, ଯେଉଁଠି ଏହି ଏଣ୍ଟାମିବା ରୋଗ ଦେଖାଯାଏ ନାହିଁ । ଏଇ ଏଣ୍ଟାମିବା ହିଷ୍ଟୋଲିଟିକା ପରି ଏତେ ବେଶି କ୍ଷତିକାରକ

ନୁହେଁ । କିନ୍ତୁ ହିଷ୍ଟୋଲିଟିକା ଥିଲେ ଇଏ ତାହା ସହ ମିଶି ନାଳଝାଡ଼ାକୁ ବଢ଼େଇ ଦିଏ ।

## ଟ୍ରିପାନୋସୋମା

ଆଉ ଏକ ସାଂଘାତିକ ପ୍ରୋଟୋଜୋଆ ହେଲା ଏଇ ଟ୍ରିପାନୋସୋମା । ଆଫ୍ରିକା ଦେଶରେ ବାସ କରୁଥିବା କିଛି ମେରୁଦଣ୍ଡୀ ପ୍ରାଣୀଙ୍କ ରକ୍ତରେ ଇଏ ପରଜୀବୀ ଭାବରେ ରହିଥାଏ । ରକ୍ତଶୋଷି ଖାଇଥିବା ସେତ୍‌ସି ମାଛି ଏହାକୁ ଗୋଟିଏ ଜୀବରୁ ଅନ୍ୟ ଏକ ଜୀବକୁ ନେଇଯାଏ । ଆଫ୍ରିକା ଦେଶରେ ରହୁଥିବା ମଣିଷମାନେ ଏହି ସେତ୍‌ସି ମାଛି ନିମନ୍ତେ ଏହି ଟ୍ରିପାନୋସୋମା ଗାମ୍ବିଏନ୍‌ସି ଦ୍ୱାରା ଆକ୍ରାନ୍ତ ହୋଇ 'କାଳନିଦ୍ରା' ଯୋଗୁଁ ମୃତ୍ୟୁମୁଖରେ ପଡ଼ନ୍ତି ।

ଆଫ୍ରିକା ଦେଶରେ କିଛି ହରିଣଙ୍କ ଦେହରେ ଏମାନେ ସଦାବେଳେ ସଂରକ୍ଷିତ ହୋଇ ମହଜୁଦ ଥାଆନ୍ତି । ସେମାନଙ୍କ ଠାରେ କୌଣସି ଅସୁବିଧା ପରିଲକ୍ଷିତ ହୁଏ ନାହିଁ । ଆଫ୍ରିକାରେ ରହୁଥିବା ସେତ୍‌ସି ମାଛି ସେହି ହରିଣ, ସମ୍ବର ଜାତିର ଜୀବଙ୍କଠାରୁ ରକ୍ତଶୋଷି ନିଜ ମଧ୍ୟକୁ ଟ୍ରିପାନୋସୋମାକୁ ନେଇ ଆସେ । ଯେତେବେଳେ ସେତ୍‌ସି ମାଛି ଭଲ ମଣିଷକୁ କାମୁଡ଼େ, ଭଲ ମଣିଷଙ୍କ ରକ୍ତକୁ ଏ ପ୍ରୋଟୋଜୋଆ ଚାଲି ଆସେ ଓ ମଣିଷ ଏହି କାଳଜ୍ୱରରେ ପଡ଼ିଥାଏ ।

ଟ୍ରିପାନୋସୋମା ଅତି କ୍ଷୁଦ୍ର ପତଳା ସରୁଆ ଗୋଟିଏ ଜୀବ । ଇଏ ଘଟାଉଥିବା ରୋଗକୁ ଟ୍ରିପାନୋସୋମିଆସିସ୍ ବୋଲି କହନ୍ତି । ରୋଗୀର ରକ୍ତ ଅଣୁବୀକ୍ଷଣ ଯନ୍ତ୍ର ତଳେ ପରୀକ୍ଷା କଲେ ଟ୍ରିପାନୋସୋମାକୁ ଦେଖିହେବ । ମଣିଷ ଦେହରେ ଓ ସେଟ୍‌ସି ମାଛି ଦେହରେ ଏହା ତା'ର ରୂପ ବଦଳାଇ ଭିନ୍ନ ରୂପ ଧାରଣ କରିଥାଏ । ଟ୍ରିପାନୋସୋମାର




ଜୀବନକାଳ ମଧ୍ୟରେ ମଣିଷ ଓ ସେଟ୍‌ସି ମାଛି ଏହି ଦୁଇଟି ଅତିଥି ଜୀବ ନ ରହିଲେ ତା'ର ଜୀବନଚକ୍ର ସମ୍ପୂର୍ଣ୍ଣ ହୁଏନାହିଁ ।

ସେଟ୍‌ସିମାଛି କାମୁଡ଼ିବା ସ୍ଥାନ ପ୍ରଥମେ ଲାଲରଙ୍ଗ ପଡ଼ିଯାଇ ଫୁଲିଯାଏ । ତା'ପରେ ସେଠି ଯନ୍ତ୍ରଣା ସହ ଜଳାପୋଡ଼ା ଆରମ୍ଭ ହୁଏ । ତହିଁ ପରେ ପରେ ଅଚେତ ହେଲା ପ୍ରାୟ ଅତ୍ୟଧିକ ଜ୍ୱର ହୁଏ । ରକ୍ତହୀନତା ସାଙ୍ଗଙ୍କ ମୁଣ୍ଡବନ୍ଧା, ଦୁର୍ବଳ ଲାଗିବା ଆଦି ଉପସର୍ଗ ପରିଲକ୍ଷିତ ହୋଇଥାଏ । ଶେଷରେ ମନୁଷ୍ୟ ଅଚେତ ପ୍ରାୟ ହୋଇ ଜ୍ଞାନ ହରାଏ ଓ ଶେଷରେ ମୃତ୍ୟୁମୁଖରେ ପଡ଼େ । ଏହି ଜ୍ୱରକୁ ଆଫ୍ରିକାର କାଳନିଦ୍ରା" ବୋଲି କୁହାଯାଏ ।

ଏହି ଟ୍ରିପାନୋସୋମାର ଆଉ କେତୋଟି ଜାତି ଅଛନ୍ତି ଯେଉଁମାନେ ଗାଈ ଗୋରୁଙ୍କଠି ହୋଇଥାନ୍ତି ।

## ଲେସ୍‌ମାନିଆ

ରୋଗ କରାଯାଉଥିବା ଆଉ ଏକ ପ୍ରୋଟୋଜୋଆ ଅଛି, ଯାହାର ନାମ ଲେସ୍‌ମାନିଆ । ମଣିଷ, ଗାଈଗୋରୁ, କୁକୁର, ମେଣ୍ଢା, ଘୋଡ଼ା ପ୍ରଭୃତିଙ୍କଠି କରାଯାଉଥିବା ରୋଗକୁ ଲେସ୍‌ମାନିଆସିସ୍ କୁହାଯାଏ । ଏକପ୍ରକାର ବାଲିମାଛି (sand fly) କାମୁଡ଼ିବାଦ୍ୱାରା ଏହି ରୋଗ ହୋଇଥାଏ । ଟ୍ରିପାନୋସୋମା ପରି ଆ'ର ଜୀବନଚକ୍ର ମଧ୍ୟ ମଣିଷ ବା ଗାଈଗୋରୁ ଓ ବାଲିମାଛି—ଏହି ଦୁଇପ୍ରକାର ଜୀବଙ୍କଠାରେ ସମ୍ପନ୍ନ ହୋଇଥାଏ । ଜାତିଏ ଲେସ୍‌ମାନିଆଙ୍କ ଯୋଗୁଁ ବଥ ହୋଇଥାଏ ।

## ଟ୍ରାଇକୋମୋନାସ୍

ଆଉ ଏକପ୍ରକାର ପ୍ରୋଟୋଜୋଆ ଅଛନ୍ତି, ଯେଉଁମାନେ ମନୁଷ୍ୟ, ଗାଈଗୋରୁ ଆଦି ଗୃହପାଳିତ ପଶୁଙ୍କଠାରେ ରୋଗ




କରନ୍ତି । ଗାଈଗୋରୁ, ଜୋକ, ଉଇ ପ୍ରଭୃତିଙ୍କ ଖାଦ୍ୟ-ନଳୀରେ ଏହି ଟ୍ରାଇକୋମୋନାସ୍ ରହିଥାଏ ।

ଟ୍ରାଇକୋମୋନାସର ଆଉ କେତୋଟି ଜାତି ଅଛନ୍ତି । ସେଥିମଧ୍ୟରୁ ଟ୍ରାଇକୋମୋନାସ ବକାଲିସ୍ ମଣିଷର ମୁଖ

ଓ ଦାନ୍ତ ସନ୍ଧିରେ ରହି ପାୟୋରିଆ କରେ । ଫଳରେ ମୁଖରୁ ଦୁର୍ଗନ୍ଧ ଜାତ ହୁଏ ।

ଟ୍ରାଇକୋମୋନାସ୍ ହୋମିନିସ- ମଣିଷର ବୃହଦନ୍ତ୍ରରେ ରହି ଉଦରାମୟ ସୃଷ୍ଟି କରିଥାଏ ।

## ଜିଆର୍ଡିଆ

ଆଉ ଗୋଟିଏ ପରଜୀବୀ ହେଲା ଏଇ ଜିଆର୍ଡିଆ । ଇଏ ମଧ୍ୟ ମନୁଷ୍ୟର ଖାଦ୍ୟନଳୀ ମଧ୍ୟରେ ଓ ମୂଷା ଠେକୁଆ, ଗିନିମୂଷା, କୁକୁର, ବିଲେଇ, ବେଙ୍ଗ ଇତ୍ୟାଦି ଜୀବଙ୍କଠି ଦେଖାଦେଇଥାଏ । ଜିଆର୍ଡିଆ ଘଟାଉଥିବା ରୋଗ ନେଇ ସମସ୍ତଙ୍କର ଅଳ୍ପ ବହୁତେ ଜ୍ଞାନ ଥାଏ । ଖାଦ୍ୟ ଓ ପାଣିଦ୍ୱାରା ଏହା ଆମ ଦେହକୁ ଆସିଥାଏ ।

ଡାକ୍ତର ମଉସାଙ୍କଠାରୁ ଏତେ ପରଜୀବୀଙ୍କ କଥା ଶୁଣୁ ଶୁଣୁ ସାନୁ କହିଲା "ଆମେ ପଢ଼ିଛୁ ପ୍ଲାଜ୍‌ମୋଡ଼ିଅମ୍ କଥା । ଇଏ ମେଲେରିଆ ଜ୍ୱର କରାଏ । ମଣିଷ ଦେହରେ ଇଏ ଦଶଟି ରୂପ ଧରେ । ଆଉ ମାଈ ଆନୋଫିଲିସ ମଶାଦ୍ୱାରା ଇଏ ମଣିଷ ଦେହକୁ ଆସେ ।" ମଣିଷ ବ୍ୟତୀତ ଅନ୍ୟ ଜୀବଙ୍କ ଦେହରେ ବି କେତେଗୁଡ଼ିଏ ପରଜୀବୀ ରୋଗ କରିଥାନ୍ତି, ସେମାନଙ୍କ କଥା ତୁ ଜାଣିଛୁ କି ବୋଲି ଡାକ୍ତର ମଉସା ପଚାରିଲେ ।

ସାନ୍ନୁର ସବୁ କଥା ଜାଣିବାକୁ ପ୍ରଚୁର ଆଗ୍ରହ ଦେଖି ଡାକ୍ତରବାବୁ କହିଲେ ଆଉ କେତେଗୁଡ଼ିଏ ପରଜୀବୀ ଅଛନ୍ତି ଯେଉଁମାନେ ଜଆ, ବେଙ୍ଗ, ଉଇ ପ୍ରଭୃତି ଛୋଟ ଛୋଟ ଜୀବଙ୍କ ଦେହରେ ଥାଆନ୍ତି । ସେଥିମଧ୍ୟରୁ କେତେଗୁଡ଼ିକଙ୍କ କଥା ଜାଣିବା ନିହାତି ପ୍ରୟୋଜନ ।

## ଓପାଲିନା




ବେଙ୍ଗର ବୃହଦନ୍ତ୍ରରେ ବାସ କରୁଥିବା ଏଇ ଓପାଲିନା ଗୋଟିଏ ପ୍ରୋଟୋଜୋଆ । ବୃହଦନ୍ତ୍ର ମଧ୍ୟରୁ କିଛି ମଇଳା ଆଣି

ଗୋଟିଏ କାଚରେ ଟିକିଏ ପାଣିବୁନ୍ଦା ଦେଇ ଗୋଳେଇ, ମାଇକ୍ରୋସ୍କୋପ ତଳେ ଦେଖିଲେ ଏହି ଓପାଲିନା ଦେଖାଯାଏ । ବେଙ୍ଗ ଖାଉଥିବା ଖାଦ୍ୟରସରୁ କିଛି ଗ୍ରହଣ କରି ଇଏ ବଞ୍ଚିରହେ । ବେଙ୍ଗ ଦେହରେ ସେପରି କିଛି ସମସ୍ୟା ସୃଷ୍ଟି କଲାପରି ଇଏ ଜୀବ ନୁହେଁ । ବରଂ କୌଣସି କ୍ଷତି ନ କରି ସାଙ୍ଗ ହୋଇ ନିର୍ଭୟରେ ଜୀବନ ଯାପନ କରିଥାଏ ।

ସେହିପରି ଆଉ ଗୋଟିଏ ପରଜୀବୀ ହେଲା ମନୋସିର୍ଷ୍ଟିସ ।

## ମନୋସିଷ୍ଟିସ

କୃମି ଆକୃତିର ଅତି ବୃହଦ୍‌କାୟ ଏଇ ପ୍ରୋଟୋଜୋଆ ଜିଆ ଦେହରେ ପରଜୀବୀ ଭାବରେ ବାସ କରେ । ଏହା ଦେହରେ କୌଣସି ଅଙ୍ଗପ୍ରତ୍ୟଙ୍ଗ ନଥାଏ । ଗଡ଼ି ଗଡ଼ି ଇଏ ଏଣେତେଣେ ଯିବାଆସିବା କରିପାରେ ।

ଏହାର ଖାଦ୍ୟଭକ୍ଷଣ ପ୍ରଣାଳୀ ଅଦ୍ଭୁତ । ଇଏ ଏକପ୍ରକାର ପାଚକରସ ନିର୍ଗତ କରି ପରିପାର୍ଶ୍ୱରୁ ନିଜର ଖାଦ୍ୟ ଆହରଣ

କରିଥାଏ । ଏହାର ବାହ୍ୟ ଆବରଣଦ୍ୱାରା ଇଏ ଖାଦ୍ୟରସ ଆହରଣ କରି ନିଜ ମଧ୍ୟକୁ ନେଇଥାଏ ।

## ଗ୍ରିଗାରିନା

ଅସରପା, ଝିଣ୍ଟିକା, ଚଙ୍ଗୁଡ଼ି, ତେନ୍ତୁଳିଆ ବିଛାଙ୍କର ଖାଦ୍ୟନଳୀ ମଧ୍ୟରେ ରହୁଥିବା ଏକ ପ୍ରୋଟୋଜୋଆ । ଗ୍ରିଗାରିନା ଅସରପା, ଝିଣ୍ଟିକା ପ୍ରଭୃତି ଜୀବଙ୍କର ଖାଦ୍ୟନଳୀ ମଧ୍ୟରେ ରହନ୍ତି । ଅନ୍ୟର ଖାଦ୍ୟରେ ଭାଗବସି ଜୀବନଯାପନ କରିବା ଏପରି ପରଜୀବୀମାନଙ୍କର କାମ ।

## ଆଇମେରିଆ

କେତେକ ମେରୁଦଣ୍ଡୀ ଓ ଅମେରୁଦଣ୍ଡୀ ପ୍ରାଣୀଙ୍କ ଶରୀରରେ ଆଇମେରିଆ ପରଜୀବୀ ଭାବରେ ବାସ କରେ । କିଛି ଚଢ଼େଇଙ୍କ ଦେହରେ ମଧ୍ୟ ଇଏ ଥାଏ । କୁକୁଡ଼ାଙ୍କ ଅନ୍ତ୍ରରେ ଆଇମେରିଆ ରହି ବେଳେ ବେଳେ ନାନା ରୋଗ କରିଥାଏ ।

## ବାଲାଣ୍ଟିଡିଅମ

କିଛି ଉଭୟଚର ଜୀବ ଓ ଅମେରୁଦଣ୍ଡୀ ପ୍ରାଣୀଙ୍କ ଶରୀରରେ ଏ ବାଲାଣ୍ଟିଡିଅମ ଦେଖାଯାଏ । ବେଙ୍ଗର

ଖାଦ୍ୟନଳୀ ମଧ୍ୟରେ ଇଏ ବଡ଼ ମଉଜରେ ରହିଥାଏ । ବାଲାଣ୍ଟିଡ଼ିଅମ୍‌ର ଗୋଟିଏ ଜାତି ମଣିଷ, ମାଙ୍କଡ଼ ଓ ଘୁଷୁରି ଦେହରେ ମଧ୍ୟ ରହିଥାଏ । ପୃଥିବୀର ସମସ୍ତ ଦେଶରେ ଓ ସବୁ ପ୍ରାଣୀଙ୍କ ଖାଦ୍ୟନଳୀରେ ହିଁ ଏମାନେ ରହିଥାନ୍ତି ମଣିଷ ଦେହରେ ଏହା ରହି ନାଲଝାଡ଼ା କରାଏ ।



# ପୋଷା ଜୀବଜନ୍ତୁଙ୍କଠାରୁ
# ଆସୁଥିବା ରୋଗ (କୁକୁର)

ସାନ୍ ତା' ଶ୍ରେଣୀରେ ଫାଷ୍ଟ ହୁଏ ବୋଲି ତାଙ୍କ ସ୍କୁଲର ସାର୍‌ମାନେ ଓ ସାଙ୍ଗ ପିଲାଏ ତାକୁ ବହୁତ ଭଲ ପାଆନ୍ତି । ଘରେ ବାପା ମା' ଓ ସମ୍ପର୍କୀୟମାନେ ଓ ସାଇପଡ଼ିଶା ମଧ୍ୟ ତାକୁ ଆଦର କରନ୍ତି । ଘରେ ତା'ର ସବୁଠାରୁ ବଡ଼ ସାଙ୍ଗ ସେମାନଙ୍କ ପୋଷା କୁକୁର ପପି । ପପିକୁ ଛୁଆଟିଏ ବେଳ ସେ ରାସ୍ତାରୁ ଗୋଟାଇ ଆଣି ପାଖରେ ରଖିଛି । ଆସିଲାବେଳେ ତା' ଦେହରେ ଘା' ପଚି କ'ଣଗୁଡ଼ାଏ ହୋଇଥିଲା । ହେଲେ ସାନ୍ ତା' ଦେହରେ ମଲମ ଲଗାଇ ଘା'କୁ ଶୁଖେଇଦେଲା । ସେ ସୁସ୍ଥସବଳ ହୋଇଗଲା । ପପି ସାନ୍ ଘରେ ଗୋଟିଏ ଅତି ଦରକାରୀ ଜୀବଟିଏ ହୋଇ ରହିଲା ।

ରାତିରେ କିଏ ଗେଟ୍ ଖୋଲିଲେ ପପି ଭୁକି ଭୁକି ବାହାର ଲୋକଙ୍କ ପାଖକୁ ଧାଇଁଯାଏ । ତେଣୁ ସାଙ୍ଗ ହୁଅନ୍ତୁ କି ସାଇପଡ଼ିଶା ହୁଅନ୍ତୁ, ସମସ୍ତଙ୍କର ବହୁତ ଡର ସାନ୍ ଗେଟ୍ ଖୋଲିବାକୁ । ପପି ବନ୍ଧା ନ ହେଲେ କେହି ଗେଟ୍ ଖୋଲି ଭିତରକୁ ପଶିପାରନ୍ତି ନାହିଁ ।

ସାନ୍ ତାଙ୍କ ଗେଟ୍‌ରେ ପଟାଟିରେ "କୁକୁରକୁ ସାବଧାନ" ଲେଖି ଝୁଲେଇ ଦେଇଛି ।

ସାନ୍ ପପିକୁ ଭାରି ଆଦର କରେ । ସାନ୍‌ର ଖାଇବା ଥାଳି ପାଖରେ ପପିକୁ ଖାଇବାକୁ ନ ଦେଲେ ସାନ୍ ରାଗେ, ପପି ବି ଅଭିମାନ କରେ । ରାତିରେ ଏକା ବିଛଣାରେ ଦୁହେଁ ଶୁଅନ୍ତି । ବୁଲିଲାବେଳେ ପପି ସାନ୍ ସାଙ୍ଗରେ ଯାଏ । ଘରେ ସଦାବେଳେ ପପି ସାନ୍ ଉପରେ ଚଢ଼ୁଥାଏ ଓ ଖେଳୁଥାଏ ଓ ବସିଲାବେଳେ ସାନ୍ ଦେହରେ ଘଷିହୋଇ ବସେ ।

ଦିନେ ସାନର ଅଜା ଆସିଲେ । ଅଜା ସରକାରୀ ଡାକ୍ତର ଥିଲେ । ଏବେ ଅବସର ନେଲେଣି । ସକାଳୁ ସକାଳୁ ଅଜା ଆସି ପହଞ୍ଚିଲାବେଳକୁ ସାନ୍ ଉଠି ନଥାଏ । ସାନ୍ ସହିତ ମଶାରୀ ଭିତରେ ପପିକୁ ଦେଖି ଅଜା ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ ।

ହାତ ଗୋଡ଼ ଧୋଇ ଚା' ଖାଇ ଅଜା ସାନ୍ ସହିତ ବୁଲି ବାହାରିଲେ । ସାନ୍ ପପିକୁ ଗୋଟିଏ ଚେନ୍‌ରେ ବାନ୍ଧି ସାଙ୍ଗରେ ନେଲା ।

ବାଟରେ ଯାଉ ଯାଉ ଅଜା ପଚାରିଲେ, "ଆରେ ସାନ୍ ପପି ଆମର କି ଉପକାର କରେ କହିଲୁ ?"

ଅଜାଙ୍କ ପାଟିରୁ କଥା ନ ସରୁଣୁ ସାନ୍ କହିଲା "ଅଜା, ପପି ପରା ଆମ ଘର ଜଗୁଛି । ଦେଖିନ ପପି ଅଛି ବୋଲି ଚୋର କିମିତି ପଶୁନାହିଁ । ପପି ଅଛି ବୋଲି ବାହାରର ଅଚିହ୍ନା

ଲୋକ ଆମ ଘରକୁ ପଶିଆସିବାକୁ ଡରୁଛନ୍ତି । ଦିନେ ପରା ମୋର ସାଙ୍ଗ ମନ୍ ଘରକୁ ପଳେଇ ଆସିଲା ଯେ, ପପି ଭୁକି ଭୁକି ତା' ଉପରକୁ କୁଦିପଡ଼ିଲା । ମୁଁ ନ ଥିଲେ ପପି ମନୁକୁ କାମୁଡ଼ି ଦେଇଥାନ୍ତା ।"



ସାନ୍ଟୁର କଥା ଶୁଣି ଅଜା କହିଲେ, "ହଁ କୁକୁର ମାଲିକର ବହୁତ ଉପକାର କରେ । ଏପରିକି ତା' ଜୀବନ ବି ଦେଇଦିଏ ମାଲିକ ପାଇଁ । ହେଲେ କୁକୁରକୁ ନିଜ ବିଛଣାରେ ଶୁଆଇବା, ନିଜ ସହ ଖିଆଇବା ଠିକ୍ କଥା ନୁହେଁ । ତୁ ସ୍ୱାସ୍ଥ୍ୟରକ୍ଷା ପରା ପଢ଼ୁଛୁ । କେତେ ରକମର ରୋଗ ଅଛି ଯାହାକି କୁକୁର ପାଇଁ ମଣିଷଙ୍କ ଦେହକୁ ଆସେ ।

ଅଜାଙ୍କ କଥା ଶୁଣି ସାନୁ ଆଶ୍ଚର୍ଯ୍ୟ ହୋଇ କହିଲା--ଅଜା କୁହ ତ—ପପି ଲାଗି ମତେ କି ରୋଗ ହୋଇପାରେ ? ଅଜା ସେଠୁ କହିଲେ—ଆରେ ସାନୁ ତତେ ସବୁ କଥା କହିବି । ଯେ—ହେଲେ ତତେ ପ୍ରଥମେ ସ୍ୱାସ୍ଥ୍ୟରକ୍ଷାର ନିୟମ କହିବି । ଆମେ କୁକୁରକୁ କୋଳରେ ଧରି ଗେଲ କରୁ, ଆଦରରେ ତା ଦେହକୁ ଆମେ ଆମ ଗୋଡ଼ରେ ହାତରେ ବେକରେ ଘଷିଥାଉ, ହେଲେ ଆମର ଜ୍ଞାନ ନାହିଁ କେତେ ବଡ଼ ସାଙ୍ଘାତିକ ରୋଗ ସବୁ କୁକୁର ପାଇଁ ଆମକୁ ହୋଇ-ପାରେ ତତେ ସବୁ କହୁଛି ।

ପାଗଲା କୁକୁର କାମୁଡ଼ିଲେ ଜଳାତଙ୍କ ରୋଗ ହୁଏ । ଏହି ରୋଗର ଜୀବାଣୁ ଭଲ କୁକୁର ଦେହରେ ମଧ୍ୟ ଲୁଚିରହି ବଢ଼ିଥାନ୍ତି । ଜଳାତଙ୍କ ରୋଗୀ ପାଣି ଦେଖିଲେ ଡରେ । ପାଟିରୁ ଲାଳ ଗଡ଼ାଏ । ଅନ୍ୟକୁ କାମୁଡ଼ିଲେ ଅନ୍ୟକୁ ଜଳାତଙ୍କ ରୋଗ ହୁଏ । ତାହାର ଲାଳ ଅନ୍ୟଠି ଲାଗିଲେ ଅନ୍ୟକୁ ଏ ରୋଗ ହୁଏ । ଏଥିରେ ରୋଗୀ ମରିବା ନିଶ୍ଚିତ । ଏ ଜଳାତଙ୍କ ରୋଗ ପାଇଁ ଔଷଧ ବାହାରିନାହିଁ । ପପିକୁ କ'ଣ ଜଳାତଙ୍କ ରୋଗ ନ ହେବା ଲାଗି ପଶୁଡାକ୍ତରଙ୍କ ପାଖକୁ ନେଇ ଇଞ୍ଜେକ୍‌ସନ୍ ଦେଉଛୁ ?

ତୁ ତ ତୋ ବହିରେ ପଢ଼ିଥିବୁ—ଜୀବାଣୁ, ଅଣୁଜୀବ, ଭୂତାଣୁ ଇତ୍ୟାଦି । ଜଳାତଙ୍କ ରୋଗ ଏକ ଭୂତାଣୁରୁ ହୁଏ । ଜଙ୍ଗଲରେ ରହୁଥିବା ପାଗଲା ବିଲୁଆ, କୁକୁର, ଶିଆଳ ହେଣ୍ଟାବାଘ ଆଦିଙ୍କ ଦେହରେ ଏ ଭୂତାଣୁ ଲୁଚି ରହିଥାଏ । ଯଦି କେତେବେଳେ ବଣ ଜଙ୍ଗଲର ଏହି ପାଗଲା ଜନ୍ତୁମାନେ

ସହର ବା ଗାଁରେ ଥିବା ଗାଈଙ୍କୁ କାମୁଡ଼େ ତେବେ ବୁଲା କୁକୁର, ଗାଈ ପାଚକା ପାଇଯାଆନ୍ତି । ସେମାନଙ୍କ ଦେହରେ ଜଳାତଙ୍କ ରୋଗର ଜୀବାଣୁ ପ୍ରବେଶ କରନ୍ତି । ଏହି ପାଗଳା ହୋଇଥିବା କୁକୁର କି ଗାଈ ଗାଁ ଓ ସହରକୁ ଫେରି ଆସି ଅନ୍ୟ ମଣିଷ, ଗାଈ, କୁକୁର ପ୍ରଭୃତିଙ୍କ ସାଙ୍ଗରେ ରହେ । କେତେବେଳେ ବି ଯଦି ଭଲ ଗାଈଗୋରୁ ଓ ମଣିଷଙ୍କୁ କାମୁଡ଼େ, ତା ଦ୍ୱାରା ଭଲ କୁକୁର, ଗାଈଗୋରୁ ମଣିଷ ପାଗଳା ହୁଅନ୍ତି । ଏପରିକି ଘରେ ରହୁଥିବା ପୋଷା କୁକୁର ବି ବୁଲା ପାଗଳା କୁକୁରଙ୍କ ହାବୁଡରେ ପଡ଼ି ସେମାନଙ୍କ ଦ୍ୱାରା କାମୁଡା ଖାଇ ପାଗଳ ହୁଏ । ତେଣୁ ଜୀବଜନ୍ତୁଙ୍କୁ ପୋଷିବ ତ ନିଶ୍ଚୟ; ହେଲେ ତାଙ୍କୁ ନିଜ ବିଛଣାରେ ଶୁଆଇବ ନାହିଁ । ଏକା ଥାଳରେ ଖୋଇବ ନାହିଁ ଓ ଦେହରେ ଘଷିବ ନାହିଁ ।"

ଅଜାଙ୍କଠୁ ପାଗଳା ହେବା କଥା ଶୁଣି—ସାନୁ କହିଲା, "ଅଜା—ଆମ ପପିକୁ କି ଇଞ୍ଜେକ୍‌ସନ୍ ଦେବା ?"

ସାନୁର କଥା ଶୁଣି ଅଜା କହିଲେ, "ହଉ, ମୁ ବଜାରରୁ ଇଞ୍ଜେକ୍‌ସନ ଆଣିଦେବି—ହେଲେ ପ୍ରଥମରୁ ଯଦି ପ୍ରତିକାର କରିବ, ତେବେ ଜଳାତଙ୍କ ରୋଗ ଆଦୌ ହେବ ନାହିଁ । ହେଲେ ଖାଲି ତ ଜଳାତଙ୍କ ନୁହେଁ ଆହୁରି କେତେଗୁଡ଼ିଏ ରୋଗ କୁକୁରଠୁ ମଣିଷ ଦେହକୁ ଆସେ । ସେ ସବୁରୁ ଗୋଟିଏ ହେଲା ଏକ ପ୍ରକାର ଯାଦୁ ।

ଯାଦୁ :

ଦେଖୁନୁ ତୁ ତୋର ଗୋଡ଼, ପିଠି ସଦାବେଳେ ଘଷୁଛୁ । ହେଇ ଦେଖ, କେମିତି ଏଠି ଘାଆ ହେଇଛି ।

ଟିଙ୍କ :

ହଁ କୁକୁରଠି ହୋଇଥିବା ଆଉ ଗୋଟିଏ ଜୀବ ହେଉଛି ଟିଙ୍କ ଓ କୁକୁର ଉକୁଣୀ । ଯଦି କୁକୁରକୁ ପରିଷ୍କାର-ପରିଚ୍ଛନ୍ନ କରି ନ ରଖିବ, ତେବେ ତା ଦେହରେ ଟିଙ୍କ ହେବେ । ଏ ଟିଙ୍କ କୁକୁର, ଗାଈଗୋରୁ, ଛେଳି, ମେଣ୍ଢା ପ୍ରଭୃତି ପଶୁର ଦେହରେ ହୋଇଥାଏ । ଟିଙ୍କ ଜୀବମାନଙ୍କ ଦେହରୁ ରକ୍ତ ଶୋଷି ବଞ୍ଚନ୍ତି । ସେମାନେ ରୁମ ମୂଳକୁ କାମୁଡ଼ି ଧରନ୍ତି ଓ ଓ ରକ୍ତ ଟାଣି ଶୋଷି ଟମ୍ ହୋଇ ଫୁଲିଯାଆନ୍ତି । ଉକୁଣୀ-ମାନେ ରୁମ ଆଡେ ଚଳପ୍ରଚଳ ହୁଅନ୍ତି ରକ୍ତ ଖାଇ ବଞ୍ଚନ୍ତି । କୁକୁର ଓ ମଣିଷମାନେ ଯଦି ଏକାଠି ରହିବେ, ଏକାଠି ଶୋଇବେ, ଦେହରେ ଘଷିହେବେ ତେବେ କୁକୁରର ଉକୁଣୀ ଓ ଟିଙ୍କ ମଣିଷ ଦେହକୁ ଚାଲିଆସିବ ।

ଟିଙ୍କ, ଉକୁଣୀ କଥା ଶୁଣି ଯାଦୁ ଭାରି ଗୁହାଳିଆ ହୋଇ ଗଲା । ସେ ତା' ଦେହ, ହାତ, ଗୋଡ଼ ଅଣ୍ଡାଳି ପକେଇଲା । ପରି ଆଙ୍ଗୁଠି କାନ ମୂହଁକୁ ବି ତଦାରଖ କରିଗଲା । ପରିର ଆଙ୍ଗୁଠି ସନ୍ଧିରୁ ତିନିଟା ଛୁଆ ଟିଙ୍କ ବାହାରିଲେ । ଯାଦୁ ଟିଙ୍କ-ଗୁଡ଼ିକୁ ଟାଣିଆଣି ପାଦ ନଖରେ ଚିପି ଚଟାଣରେ ମାରିଦେଲା । ସେଗୁଡ଼ିକଙ୍କ ଦେହରୁ ରକ୍ତ ବାହାରିଲା ।

ଅଜା ପଚାରିଲେ ରୁମ ମୂଳରୁ ଉକୁଣି ଦେଖେଇଦେଲେ । ସାନୁ ପଚାରିଲା ଦେହ ରୁମ ମୂଳକୁ ଖୋଜି ପକେଇଲା । ଆଉ ଟିକି ଟିକି ଉକୁଣୀମାନ ଆଙ୍ଗୁଠିରେ ଉଡ଼ିଆଣି ସାନ ମାରିଲା ।

ପୁଣି ସାନୁ କହିଲା—"ଆଚ୍ଛା ଅଜା, ଆଉ କ'ଣ ରୋଗ କୁକୁରର ଦେହରୁ ଆମକୁ ଆସିବ କହିଦିଅ ତ ।" ସାନୁର ଏତେ ଆଗ୍ରହ ଦେଖି ଅଜା ଖୁସି ହୋଇଯାଇ କହିଲେ "ଶୁଣ୍ କୁକୁରଠୁ ଆସୁଥିବା ସବୁଠାରୁ ସହଜ ରୋଗ ହେଉଛି କୃମି । ଯେହେତୁ କୁକୁର ପେଟରେ ନାନା ଜାତିର କୃମି ବସା ବାନ୍ଧି ରହିଥାନ୍ତି । ମଣିଷଙ୍କ ପରି କୁକୁର ତ ଝାଡ଼ା ଯାଇସାରି ତା ମଳଦ୍ୱାର ମୁହଁ ପାଣିରେ ଧୁଏ ନାହିଁ । ତେଣୁ ସେ ଝାଡ଼ା ଫିବା ପରେ ତା' ମଳଦ୍ୱାର ମୁହଁରେ ମଇଳା ଲାଗି ରହେ । ଆଉ ଯେତେବେଳେ ଆମେ ପାଖରେ ଧରି ତାକୁ ଗେଲକରୁ ବା ଆମ ଦେହରେ ଘଷୁ କି କୋଳରେ ବସାଉ, ଆମ ଅଜାଣତରେ ଆମ ଦେହରେ, ଲୁଗାରେ କୁକୁର ମଇଳା ଲାଗିଯାଏ । ଆଉ କୁକୁରର ପେଟରେ ଥିବା କୃମିର ଅଣ୍ଡା କୁକୁର ଝାଡ଼ାରେ ଥିବାରୁ, ଆମ ଦେହକୁ, ଲୁଗାକୁ ଚାଲି ଆସେ । ଆଉ ଆମ ପେଟରେ କୃମି ହୋଇ ଆମକୁ ହନ୍ତସନ୍ତ କରେ ।

ସମୟେ ସମୟେ କୁକୁର ଦେହରୁ ନାଲରକ୍ତ ଝାଡ଼ାର ଜୀବାଣୁ ମଣିଷ ଦେହକୁ ଚାଲିଆସେ । ଆଫ୍ରିକା ଦେଶରେ ପୋଷା କୁକୁର, ବିଲେଇଙ୍କ ଦେହରୁ କାଲାଜର ନାମକ ରୋଗ ମଣିଷକୁ ଚାଲିଆସେ ।

ପପିଠାରୁ ଏତେ ଗୁଡ଼ିଏ ରୋଗ ତା ଦେହକୁ ଚାଲି ଆସିପାରେ ଜାଣିଲାପରେ ·ସାନ୍ ବଡ଼ ଚିନ୍ତାରେ ପଡ଼ିଲା । କଣ ତାହାହେଲେ ପପିକୁ ସେ ଘରୁ ତଡ଼ିଦେବ ?

ନାଲରକ୍ତ ଝାଡ଼ା ତ ତାକୁ ଓ ତା ବୋଉକୁ ମଝିରେ ମଝିରେ ବାରମ୍ବାର ହେଉଛି । ବାପା ଔଷଧ ଦୋକାନରୁ ବଟିକା କିଣି ଆଣିଦେଲେ ସେମାନେ ଖାଇ ଭଲ ହେଉଛନ୍ତି । ଆଉ 'କାଲାଜର' କି ଭୟଙ୍କର ଜ୍ୱରରେ ବାବା, ଯଦି କେବେ ହେବ ତ ଜୀବନ ଚାଲିଯିବ ।

ସାନ୍ ବଡ ଚିନ୍ତାରେ ପଡ଼ିଗଲା । ଗୁମ୍ ହୋଇ କ୍ଷଣେ ବସିଲା । ଅଜାଙ୍କୁ ମନ କଥା କହିଲା । ଅଜା କହିଲେ, "ସାନ୍, ତୁ କାହିଁକି ବ୍ୟସ୍ତ ହେଉଚୁ ? କଣ କଲେ ପପିଠୁ କିଛି ରୋଗ ହେବନାହିଁ, ତୁ ଓ ତୋ ବାପା ମା ନିରାପଦରେ ରହିବେ ସେ ଉପାୟ ମୁଁ ତତେ ବତେଇ ଦେଉଛି । ମୁଁ ପରା ଡ଼ାକ୍ତର । ରୋଗୀଙ୍କୁ ଭଲ କରୁଛି । ପରୀକ୍ଷା ନିରୀକ୍ଷା କରୁଛି । ମୋ ଉପରେ ସେତିକି ଭରସା ରଖ ।"

"ଯଦି ଘରେ କୁକୁର ରଖିବ, ତେବେ ତାକୁ ପରିଷ୍କାର, ପରିଚ୍ଛନ୍ନ କରି ରଖିବ । ମଝିରେ ମଝିରେ ଲାଇଫ୍‌ବୟ

ସାବୁନ ଲଗାଇ ପରିଷ୍କାର କରି ଗାଧୋଇ ଦେବ । ପ୍ରତିଦିନ ବ୍ରସ୍‌ଟିଏ ଧରି ତା ରୁମକୁ ରଗଡ଼ିକରି କୁଣ୍ଡେଇ ଦେବ, ଯେପରି ମଲାରୁମ ସବୁ ଝଡ଼ିଯିବ ଓ ତା ସଙ୍ଗେ ତା ଦେହରେ ଟିଙ୍କ କି ଉକୁଣି ଯଦି ହୋଇଥିବ ସେ ବି ଝଡ଼ିପଡ଼ିବ । ପ୍ରତିଦିନ କିଛି ସମୟ ଦେଇ କୁକୁର ରୁମ ମୂଳକୁ ଭଲ କରି ତନଖି ନେବ, ଯେପରି ଉକୁଣୀ, ଟିଙ୍କ ରହିବେ ନାହିଁ । ଯଦି ଉକୁଣୀ ହୋଇଥିବ ତେବେ ପଶୁଡ଼ାକ୍ତରଙ୍କ ପରାମର୍ଶ ନେଇ ଔଷଧ ଲଗେଇଦେବ । ଫଳରେ ଔଷଧ ବିଷୟୁରେ ଉକୁଣୀ, ଟିଙ୍କ ସବୁ ମରି ଝଡ଼ି ପଡ଼ିବେ ।

ପ୍ରତି ଦୁଇ ତିନି ମାସରେ ପଶୁଡାକ୍ତରଙ୍କ ପରାମର୍ଶ କରି କୁକୁରକୁ କୃମି ପାଇଁ ଔଷଧ ଦେବ । କୁକୁରକୁ ଗୋଲକୃମି ଓ ଫିତାକୃମି—ଏହି ଦୁଇଟି ନିମନ୍ତେ ଔଷଧ ଦେବା ନିତାନ୍ତ ଦରକାର ।

କୁକୁରକୁ ପ୍ରତିବର୍ଷ ଥରେ ଜଳାତଙ୍କ ରୋଗର ଇଞ୍ଜେକ୍‌ସନ ଦେବାକୁ ହୋଇଥାଏ । ଏହି ଇଞ୍ଜେକ୍‌ସନ ନ ଦେଇ ହେଲା କଲେ କୁକୁରକୁ ଜଳାତଙ୍କ ହେବାର ଆଶଙ୍କା ରହେ ।

ଘର କୁକୁରକୁ କେବେହେଲେ ରାସ୍ତାକୁ ଛାଡ଼ିବ ନାହିଁ ବା ବୁଲାକୁକୁରଙ୍କ ସହ ମିଶିବାକୁ ଦେବନାହିଁ । ତାକୁ ବାନ୍ଧି କରି ରଖିବ । ମଝିରେ ମଝିରେ ଖୋଲିଦେଲେ ଓ ଖାଇସାରିବା ପରେ ଖୋଲିଦେଲେ ସେ ବାହାରେ ଝାଡ଼ା,

ପରିଷ୍କାର କରି ଆସିବ । କୁକୁର ଝାଡ଼ା ଫେରି ସାରିଲେ ତା ମଳ ଉପରେ ମାଟି ଘୋଡ଼ାଇ ଦେବ ।

ସବୁଠାରୁ ମନେରଖିବା କଥା ଯେ, ଯେତେବେଳେ କୁକୁରକୁ ଛୁଇଁବ ସଙ୍ଗେ ସଙ୍ଗେ ସାବୁନ ବା ଡେଟଲ ଲଗେଇ ହାତ ଧୋଇବ । କୁକୁରକୁ ଅଲଗା ପାତ୍ରରେ ଖାଇବାକୁ ଦେବ । ଏପରି ନିୟମ ମାନି ଚାଲିଲେ କୁକୁର ରଖିବା ନିରାପଦ ହେବ ।

ଅଜାଙ୍କଠାରୁ ଏତେ କଥା ପପ ପାଖେ ଶୁଣି ସାନୁ ଭାରି ଖୁସି ହୋଇଗଲା । ପପକୁ ନିର୍ଭୟରେ ଘରେ ରଖିପାରିବ ଜାଣିଲା ପରେ ସେ ହସି ହସି ଖେଳିବାକୁ ଗଲାଚାଲି ।

---